# ଗୋପାଳ ଭଣ୍ଡଙ୍କ ହସମୁଣି



ସଂଗ୍ରାହକ :

ଶ୍ରୀ ଅଦ୍ୱୈତପ୍ରସାଦ ଦାଶ



ପ୍ରଥମ ମୁଦ୍ରଣ :



ପ୍ରକାଶକ :

ଧର୍ମଗ୍ରନ୍ଥ ଷ୍ଟୋର

ଅଲିଶାବଜାର, କଟକ-୨

ଫୋନ୍ ନଂ-୨୪୭୯୭



ମୁଦ୍ରଣ :

ସୁଲୋଚନା ପ୍ରିଣ୍ଟର୍ସ

ମ ନସିଂହପାଟଣା, କଟକ-୮



ମୂଲ୍ୟ—ବାରଟଙ୍କା ମାତ୍ର

# ସୂଚିପତ୍ର

# ଗୋପାଳ ଭାଣ୍ଡଙ୍କ ଜୀବନୀ

ଗୋପାଳର ଶୈଶବ କାଳ । ବୟସ ଛଅ, ସାତରୁ ଅଧିକ ନୁହେଁ । ସେ ଥିଲେ ବାପମାଆଙ୍କର ଅତି ଆଦରଣୀୟ ପୁଅ । ଜନ୍ମ ସମୟରେ ଗ୍ରହ ନକ୍ଷତ୍ର ଗୁଣ ଦେଖି ରହସ୍ୟମୟ ଭାବରେ ସ୍ପଷ୍ଟ ବଦନକୁ ବନ ଫୁଟିଉଠିଲା । ଗୋପାଳର ଅଙ୍ଗ ପ୍ରତ୍ୟଙ୍ଗର ଆକାର ପ୍ରକାର କୌତୁହଳ ପୂର୍ଣ୍ଣ ହେଲେ ମଧ୍ୟ ଉଦରଟି ଠିକ୍ ଆସନ୍ନପ୍ରସବା ନାରୀ ସଦୃଶ—ଓଳଆ ଠାରୁ କିଛି ଟେକଣୀ ହେବ । ଗୋପାଳର ବାଲ୍ୟକାଳରେ ଖେଳ କୌତୁକ ପ୍ରତି ବିଶେଷ ଅନୁରାଗ ଥିଲା । ଉଦରର ବିଶାଳତା ଦୃଷ୍ଟିରୁ ସେ ଦୌଡ଼ା ଦୌଡ଼ି କରିବାକୁ ଅକ୍ଷମ ଥିଲେ; ତେଣୁ ଧୂଳିବାଲି ଖେଳ, ଲୁଚକାଳି ଓ ପୁଚି ଖେଳ ଥିଲା ତାଙ୍କର ପ୍ରିୟ ଖେଳ ।

ମାଘମାସର ଶୀତଦିନ । ଶ୍ରୀପଞ୍ଚମୀ । ତାହା ପୂର୍ବଦିନ ଗ୍ରାମରେ ବଡ଼ଦା ଗଣେଶ ପୂଜା ହୋଇଥାଏ । ଗୋପାଳ ଗଣେଶ ଦେଖିବାକୁ ଆସି ସାଥିପିଲା ଯଦୁ ରାଧୁ ମଧୁ ...ଙ୍କ ସହିତ ପୁଚି ଖେଳ ଆରମ୍ଭ କଲେ । ଗୋପାଳଙ୍କର ଉଦରଟି ପୁଚି ଖେଳିଲା ବେଳେ ତଳେ ଲୁଟେଇ ପୁଟେଇ ହେବାର ଦେଖି ପିଲାମାନେ ହସୁଥାଆନ୍ତି । ସେ ସବୁକୁ ଖାତିର ନକରି ଉପରେ ସାଥିପିଲାମାନଙ୍କୁ ଖେଳରେ ହରାଇବ ତାହା ଘନ ଘନ ନିଃଶ୍ୱାସ ରୁଦ୍ଧ ହୋଇ ଆସିଲା । ତଥାପି ତାଙ୍କର ସେ ସବୁକୁ ଖାତିର ନଥିଲା ।

ଏହିପରି ଗୋପାଳ ଖୁବ ଖେଳୁ ଖେଳୁ ଜଉତର ହଠାତରେ ଅବଶ ହୋଇ ମଡ଼ି ପାଖରେ ଥିବା ନାଳରେ ଗଳିପଡ଼ି କାଦୁଅ ବୋଳି ହୋଇ ପଡ଼ିଲା । ପଡ଼ିଯିବାର ଦେଖି ସବୁ ପିଲାମାନେ ସମସ୍ତେ ହାତ ତାଳି ଦେଇ ଖୁବ୍ ଜୋର୍‌ରେ ହସି ଉଠିଲେ ଏବଂ ଖୁବ୍ ଜୋର୍‌ରେ ଡାକ ପକାଇଲେ—ଧାଇଁ ଆସ ହୋ, ପେଟୁଆ ଯେ ପାଣି କାଦୁଅରେ ପଡ଼ିଗଲା । ତାଙ୍କର ପାଟିତୁଣ୍ଡ ଶୁଣି ଶ୍ରୀପଞ୍ଚମୀ ପୂଜାରୁ ଫେରୁଥିବା ଲୋକମାନେ ଗୋପାଳକୁ ଉଠାଇ ଆଣି ଧୋଇଧାଇ ଦେଲେ । ଗୋପାଳ ଲୋକଙ୍କୁ ଦେଖି ଅଦ୍ଭୁତ ଲଜ୍ଜିତ ହୋଇ ଭାବିଲା, ଏ ପିଲାମାନେ ଖୁବ୍ ଦୁଷ୍ଟ । ଏମାନଙ୍କ ପାଇଁ ମୁଁ ଆଜ ଅପମାନ ପାଇଲି । କିପରି ସେମାନଙ୍କ ପ୍ରତିଶୋଧ ନେବି ଭାବି ଲୋକଙ୍କୁ କହିଲା ହେ ଭାଇ ! କାଲି ମୋର ଏଠାରେ ହଉଥିବା ଗଣେଶ ପୂଜା ହୋଇଥିଲା । ଲୋକେ ଅଦ୍ଭୁତ ପ୍ରକାର ଭୋଗ ଲାଗ କରିଥିଲେ । ମୋ ପେଟଟି ଗଣେଶ ପେଟ ପରି ହୋଇଥିବାରୁ ଦୁଷ୍ଟ ପିଲାମାନେ ମୋତେ ଗଣେଶ କରି ପୂଜା କରିବାକୁ ଲାଗିଲେ । ସେ ଦିନା ମାଟିର ଗଣେଶ ପୂଜା କଲେ, ମୁଁ ସଜୀବ ଗଣେଶ ହେବି, ମୋ ଉପରେ ଫୁଲମାନ ଦିଅ । ଯେଉଁମାନେ ମାଟିର ଗଣେଶ କରୁଛନ୍ତି ସେମାନେ ମୋତେ ଦେଖି ଲଜ୍ଜିତ ହେବେ ।

ଏକଥା ଶୁଣି ପିଲାମାନଙ୍କର ମନ ଆନନ୍ଦରେ ଭରିଗଲା । ସମସ୍ତେ ବାଡ଼ ବଗିଚାରୁ ଫୁଲମାନ ତୋଳି ଗୋପାଳକୁ ସଜାଇ ଦେବାରୁ ସେ ଠିକ୍ ଗଣେଶ ପରି ଶୋଭା ପାଇଲା । ଏହାପରେ ଗୋପାଳ ପିଲାମାନଙ୍କୁ କହିଲା—ଏ ସାଙ୍ଗ ଭାଇମାନେ ! ମୋତେ ସିଦା ଫୁଲ, ଚନ୍ଦନ ଦେଇ ପୂଜାକର; କିନ୍ତୁ ମାଟି ଗଣେଶ ହାତରେ

ଟିକେ ଲଡ଼ୁ ଦେଇଥାନ୍ତୁ । ମୁଁ ତ ସବୁଙ୍କେ ଜାଗନ୍ତ ଗଣେଶ; ତେଣୁ ତୁମେମାନେ ମୋହାତରେ ଲଡ଼ୁ ଆଣି ଦିଅ । ମୋପାଖରେ କେତେ ଲଗାଇଲେ ସିଧା ଠାକୁର ଭଳି ଶୋଇ ଯାଇବ ? କେବଳ ଫୁଲପାନ ଦେଲେ କ'ଣ ହେବ ? ପିଲାମାନେ ଗୋପାଳର କଥା ଶୁଣି ଗଣେଶ ପୂଜା କରୁଥିବା ବେଳେ ନିଜ ନିଜ ଘରେ କିଛି ପଇସା ନେଇ ଆସିଲେ । ସେହି ପଇସାରେ ଲଡ଼ୁ କିଣିଆଣି ଗୋପାଳ ହାତରେ ଦେଲେ । ଗୋପାଳ ପେଟଭରି ଲଡ଼ୁ ଖାଇଲା ଏବଂ ଅବଶିଷ୍ଟ ପିଲାମାନଙ୍କୁ ଦେବାରୁ ସେମାନେ ସେଥିରୁ କିଛି ଖାଇ ଅବଶିଷ୍ଟ ନିଜ ନିଜ ଘରକୁ ନେଇଗଲେ । ଘରେ ବାପା, ମା ଓ ଘର ଲୋକମାନେ ଗଣେଶ ଦେଖିବାକୁ ଆସି ଦେଖିଲେ ଯେ, ନାପିତ ଗୋପାଳ ଗଣେଶ ହୋଇ ସେମାନଙ୍କୁ ଅଇଁଠା ଖୋଇ ସାରିଲାଣି । ଗୋପାଳର ଏହିପରି କୌତୁକ ଖଣ୍ଡ ସ୍ୱଭାବ ଯୋଗୁଁ ଲୋକମାନେ ଗୋପାଳକୁ "ଖଣ୍ଡ" ଆଖ୍ୟା ଦେଲେ । ସେହିଦିନ ଠାରୁ ଆଜି ପର୍ଯ୍ୟନ୍ତ ଚଳି ଆସୁଛି—ଖଣ୍ଡ ଗୋପାଳ ବା ଗୋପାଳ ଖଣ୍ଡ ।



# ଗୋପାଳ ଭଣ୍ଡ ରହସ୍ୟ

## ମା' ଆସେନା, ବାବା ଆସେ

ବହୁ ବର୍ଷ ପୂର୍ବେ ଗୋଟିଏ ଧନୀଲୋକ ଏକଦା ଗୋଟିଏ ଉତ୍ସବ ଉପଲକ୍ଷେ ବହୁତ ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କୁ ଆମନ୍ତ୍ରଣ କରିଥିଲେ । ଆହୁରି ମଧ୍ୟ ରାଜା କୃଷ୍ଣଚନ୍ଦ୍ର ଦେବ ଆମନ୍ତ୍ରିତ ହୋଇ ଗୋପାଳ ଭଣ୍ଡକୁ ନେଇ ସେଠାରେ ଉପସ୍ଥିତ ହୋଇଥିଲେ । ଏହିପରି ଅନେକ କାରଣରୁ ବା ବହୁ ଲୋକ ସମାଗମରୁ ସ୍ଥାନଟି ଜନଗହଳରେ ପୂରି ଉଠିଥିଲା ଏବଂ ସେଥିପାଇଁ ଚାଲିଥିଲା ହାସ୍ୟରସ ଥଟ୍ଟାତାମସା । ସେହି ହାସ୍ୟରସକୁ ଆହୁରି ବଢ଼ାଇ ଦେବାପାଇଁ ଜଣେ ଭଦ୍ରବ୍ୟକ୍ତି ଗୋପାଳକୁ ପ୍ରଶ୍ନ କହିଲେ—"ଗୋପାଳ ! ତୋ ଚେହେରା ଆଉ ମୋ ଚେହେରା ମଧ୍ୟରେ ମୁଁ ତ କୌଣସି ସାମଞ୍ଜସ୍ୟ ଦେଖିବାକୁ ପାଉ ନାହିଁ । ଏହାର କାରଣ କ'ଣ ଜାଣିଛୁ କି ? ପ୍ରାୟ ମୁଁ ଯାହା ଅନୁମାନ କରୁଛି, ତୋ ମାଆ ଆମ ଘର ଆଡ଼େ ଆସେ ।"

ଏକଥା ଶୁଣି ସମସ୍ତଙ୍କ ମୁହଁ ଠୋ ଠୋ ହସରେ ହସିତ ହୋଇ ଉଠିଲା; ତେଣୁ ସମସ୍ତେ ଗୋପାଳଙ୍କ ଉପରେ ଦୃଷ୍ଟି ନିକ୍ଷେପ କଲେ; କିନ୍ତୁ ଗୋପାଳ କ'ଣ ଏଥିରେ ଟଳିବା କଥା ? ତେଣୁ ସମସ୍ତେ ହସିବା ଦେଖି ସେ ମଧ୍ୟ ହସି କହିଲେ—"ନା ବାବୁ, ଆପଣଙ୍କ ଘରକୁ ମୋ ମା ଯାଏନି ପ୍ରାୟ ବାବା ଆସେ ।"

ଏହି ଦୁଇପଦ କଥା ଉକ୍ତ ଭଦ୍ରଲୋକଙ୍କ କାନ ମଧ୍ୟରେ ପ୍ରବେଶ କରିବାକୁ ଆଉ ଅପେକ୍ଷା ଆତୁର ଜୋର୍‌ରେ ହସି ଉଠିଲେ । ସମସ୍ତଙ୍କ ଦୃଷ୍ଟି ଗୋପାଳଙ୍କ ଉପରୁ ଯାଇ ସେହି ଭଦ୍ରଲୋକଙ୍କ ଉପରେ ପଡ଼ିଲା ; ତେଣୁ ସେହି ଭଦ୍ରଲୋକଟିର ମୁହଁ ଲଜ୍ଜାରେ କଳା ପଡ଼ିଗଲା ।

ରାଜା କୃଷ୍ଣଚନ୍ଦ୍ର ଦେବ ଏସବୁ ଦେଖୁଥିଲେ । ଶେଷରେ ଭଦ୍ରଲୋକଟିକୁ କହିଲେ—"ଏଥର ହେଲା ତ ? କାରଣ କ୍ଷିତିରେ ଗୋଟିଏ ପ୍ରବଚନ ଅଛି—ଯେମିତିକୁ ତେମିତା ।"



## ନରାଣାଂ ମାତୁଳକ୍ରମଂ

ଗୋଟିଏ ଦିନର ଘଟଣା । ମହାରାଜା କୃଷ୍ଣଚନ୍ଦ୍ର ଦେବ ରାଜମଣ୍ଡିତ ହୋଇ ସଭା କରୁଥା'ନ୍ତି । ସେହି ସଭାକୁ ଗୋପାଳ ଭାଣ୍ଡଙ୍କୁ ଆମନ୍ତ୍ରଣ ଥିବାରୁ, ଗୋପାଳ ଭାଣ୍ଡ ତାଙ୍କ ପୁଅକୁ ସାଥିରେ ନେଇ ସେଠାରେ ଉପସ୍ଥିତ ହେଲେ । ରାଜା ସେହି ପିଲାଟିକୁ ଚିହ୍ନିଥିଲେ ମଧ୍ୟ, ରହସ୍ୟ ଉଠାଇବାପାଇଁ ଗୋପାଳଙ୍କୁ ଥଟ୍ଟାରେ ପଚାରିଲେ—"ଗୋପାଳ ! ଏ ପୁଅଟି କାହାର ?" ଗୋପାଳ ଉତ୍ତର ଦେଲେ—ଏ ପୁଅଟି ମୋର ଆଜ୍ଞା ।

ରାଜା ପୁଣି କହିଲେ—ଏ ପିଲାଟି, କଣ ଠିକ୍ ମୋ ପରି ଦେଖା ଯାଉଛି ।

ରାଜାଙ୍କ କଥା ଶୁଣି ସଭାସଦ୍‌ଗଣ ହସି ଉଠିଲେ । ରାଜା ମନେ ମନେ ଭାବିଲେ, "ମୁଁ ଆଜ ଉପସ୍ଥିତପଣିଆ ଦେଖାଇ ଗୋପାଳଙ୍କୁ

ବହୁତ ଲଜ୍ଜିତ କରାଇଛୁ ।” କିନ୍ତୁ ଗୋପାଳ ଏଥିରେ ଲଜ୍ଜିତ ନ ହୋଇ ହଠାତ୍ କହିଲେ—ହେବ ନାହିଁ କାହିଁକି ମହାରାଜ ! ଶାସ୍ତ୍ର ଆପଣ ଦେଖି ନାହାନ୍ତି, ଶାସ୍ତ୍ରରେ ପରା ଲେଖାଅଛି— ନରାଣାଂ ମାତୁଳକ୍ରମଂ ।

ଏକଥା ଶୁଣି ରାଜା ଲଜ୍ଜାରେ ମୁହଁ ଉପରକୁ ଉଠାଇ ପାରିଲେ ନାହିଁ । ଏଥର ନିଜେ ଜାଣିପାରିଲେ, ଅନ୍ୟ ଲୋକଙ୍କୁ ଠକାଇବାକୁ ଗଲେ ନିଜେ ଠକାମିରେ ପଡ଼ିଥା’ନ୍ତି ।



## ସ୍ୱଗୋତ୍ରର ଅନ୍ନ

ମହାରାଜା କୃଷ୍ଣଚନ୍ଦ୍ର ଦେବ ସବୁଦିନ ଭଳି ଗୋପାଳ ଭଣ୍ଡଙ୍କୁ ନେଇ ମଧ୍ୟାହ୍ନ ଭୋଜନରେ ରତ ରହିଥିଲେ । ମହାରାଜା ଭୋଜନ ଶେଷରେ ନିଜ ହାତରେ ମୁଠାଏ ଭାତ ନେଇ ବାହାରକୁ ଆସିଲେ । ତାଙ୍କୁ ଦେଖି ଗୋପାଳ ମଧ୍ୟ ମୁଠିଏ ଭାତ ନେଇ ବାହାରକୁ ଆସିଲେ । ଉଭୟ ଦୁଇ ଜାଗାରେ ଭାତ ଥୋଇ ଦେଲେ । ରାଜାଙ୍କର ଗୋଟିଏ ପୋଷା କୁକୁର ଥିଲା । ସେ ଆସି ଗୋପାଳ ଦେଇଥିବା ଭାତକୁ ନ ଖାଇ ରାଜାଙ୍କ ଭାତକୁ ଖାଇଦେଲା । ଏହା ଦେଖି ରାଜା ପରିହାସରେ କହିଲେ—ଦେଖ ଗୋପାଳ ! କୁକୁର କିପରି ତୁମ ଭାତ ନ ଖାଇ ମୋ ଭାତକୁ ଖାଇଦେଲା ।

ଗୋପାଳ ଏପରି ଅପମାନକୁ ସହ୍ୟ କରି ନ ପାରି ମନେ ମନେ ବୁଦ୍ଧି ପାଞ୍ଚି କହିଲା—“ମହାରାଜ ! କୁକୁର ଜାତିଟା ବଡ଼

ନିଷ୍ଠାବାନ ଜାତି । ସ୍ୱଗୋହର ଅନ୍ନ ଛଡ଼ା ଅପରର ଅନ୍ନ ଖାଏ ନା ।" ଏଥିରେ ରାଜା ବଡ଼ ଲଜ୍ଜିତ ହେଲେ ।



## ଏହା ଯେ ଦୁଇଟି ଗଧର

ନିଜ ସ୍ୱାସ୍ଥ୍ୟକୁ ସବଳ ରଖିବାପାଇଁ ରାଜା କୃଷ୍ଣଚନ୍ଦ୍ର ଦେବ ପ୍ରତିଦିନ ଶଯ୍ୟାତ୍ୟାଗ କରି ପ୍ରାତଃଭ୍ରମଣ କରନ୍ତି । କେଉଁଦିନ ମନ୍ତ୍ରୀଙ୍କୁ ନିଅନ୍ତି, କେଉଁଦିନ ଏକୁଟିଆ ଯାଆନ୍ତି । ଫେରିଆସି ଥକ୍‌କା ହୋଇ ବସିଗଲେ ଗୋପାଳ ଭଣ୍ଡ ଥଟ୍ଟା କରନ୍ତି । ଗୋପାଳଙ୍କୁ ଉପଯୁକ୍ତ ଶାସ୍ତି ଦେବାପାଇଁ ଥରେ ରାଜା କହିଲେ, "ଗୋପାଳ ! ତୁମେ ମୋ ସହିତ କାଲି ଯିବ ପ୍ରାତଃଭ୍ରମଣରେ ।"

ଗୋପାଳ ସେଥିରେ ହଁ ନ କରିବା ଉପାୟ ନଥିଲା; ତେଣୁ ଗୋପାଳ କହିଲେ—ହଁ ଯିବି ।

ତତ୍‌ପର ଦିନ ରାଜା ଓ ମନ୍ତ୍ରୀ ଗୋପାଳଙ୍କୁ ସଙ୍ଗରେ ନେଇ ପ୍ରାତଃଭ୍ରମଣ ଲକ୍ଷ୍ୟରେ ଚାଲିଲେ । ଅନ୍ୟ ଦିନ ଅପେକ୍ଷା ସେଦିନ ବହୁତ ବାଟ ଆଗେଇ ଗଲେ ; କାରଣ ତାଙ୍କର ଉଦ୍ଦେଶ୍ୟ ଥିଲା ଠକାଇବା ; ତେଣୁ ଫେରୁ ଫେରୁ ସୂର୍ଯ୍ୟକିରଣ ପ୍ରଖର ହୋଇ ଯାଇଥିବାରୁ ରାଜା ଓ ମନ୍ତ୍ରୀଙ୍କ ଦେହରୁ ଝାଳ ବୋହି ବଡ଼ କଷ୍ଟ ହେଲା ; କାରଣ ରାଜା ଓ ମନ୍ତ୍ରୀ ପିନ୍ଧିଥିଲେ ମୋଟା କପଡ଼ାର ପୋଷାକ ; ତେଣୁ ରାଜା ଓ ମନ୍ତ୍ରୀ ପୋଷାକ ଓହ୍ଲାଇ ଦେଇ ଗୋପାଳଙ୍କୁ ଦେଲେ । ଗୋପାଳ ଏତେ କଷ୍ଟରେ ଏବଂ ଏତେଗୁଡ଼ାଏ

ପୋଷାକ ଧରି ଯାଇଁ ବହୁତ କଷ୍ଟ ଅନୁଭବ କଲେ ; ତେଣୁ ବାଧ୍ୟ ହୋଇ ପଛରେ ପଡ଼ି ରହିଲେ ।

ରାଜା ମନେ ମନେ ଜବର୍ଦ୍ଦ ହୋଇଛନ୍ତି ଭାବି କହିଲେ—ଏ ଖରାକୁ ତା ଉପରେ ଗୋଟିଏ-ଗଧର ଲଦନ ଲଦା ହୋଇଛି ।

ଗୋପାଳ ହସି ହସି ଉତ୍ତର ଦେଲ "ଆଜ୍ଞା ! ଏ ଗୋଟିଏ ଗଧର ଲଦନ ନୁହେଁ । ହୁଏତ ମୁଁ କହିପାରିଥାନ୍ତି ଗୋଟିଏ ଗଧର ଲଦନ ହୋଇଥିଲେ ; କିନ୍ତୁ ଆଜ୍ଞା ! ଏହା ଦୁଇଟି ଗଧର ।"



## ଅଲକ୍ଷଣ ମୁହଁ କାହାର

ରାଜା କୃଷ୍ଣଚନ୍ଦ୍ର ଦେବ ମହାନ୍ ବିଦ୍ୟାରଞ୍ଜ ଥିଲେ ମଧ୍ୟ ତାଙ୍କର ଗୋଟିଏ ଅନ୍ଧ ବିଶ୍ୱାସ ଥିଲା । ତାହା ହେଲା—ସେ ସକାଳୁ ଆଗେ ଉଠି ଯାହାର ମୁହଁ ଦେଖିଥିବେ, ସେଦିନ ଯଦି କିଛି ଅନିଷ୍ଟ ହୁଏ, ନିଜର କପାଳକୁ ନ କହି ସଙ୍ଗେ ସଙ୍ଗେ ସେହି ଲୋକଟି ଉପରେ ଦଣ୍ଡବିଧାନ କରାଯାଏ ।

ଦୈବ ବିଧାନକୁ ଦିନେ ମହାରାଜା ଝିଟିଝିଟିଆ ବେଳର ଶଯ୍ୟାତ୍ୟାଗ କରି ଯାଉଁ ଯାଉଁ ଗୋପାଳର ମୁହଁ ଦେଖିଲେ । ସେଦିନ ଭଣ୍ଡାରି ଆସି କ୍ଷୌର କରି ନଖ କାଟୁ କାଟୁ ନଖ କୋଣରେ ନହୁରୁଣୀ ବାଜି କଟିଯାଇ ରକ୍ତସ୍ରାବ ହେଲା । ଭଣ୍ଡାରି ପିଣ୍ଡରେ ପ୍ରାଣ ନଥିବା ପରି ସେ ଖାଲି ଥରିବାକୁ ଲଗିଲା ; କିନ୍ତୁ ରାଜା ତାକୁ କିଛି ନ କହି, ଗୋପାଳକୁ ଡକାଇ ପଠାଇଲେ ।

ଗୋପାଳଙ୍କ ପାଇଁ ହୋଇଥିବା ସଭାରେ ଉପସ୍ଥିତ ହୋଇ ଗୋପାଳ ନମସ୍କାର ହେବାରୁ, ରାଜା ରାଗରେ ଗର୍ଜିଉଠି କହିଲେ—

ଗୋପାଳ ! ଆଜ ଘଟିଥିବା ଘଟଣାରୁ ତୋତେ ମୃତ୍ୟୁ ଦଣ୍ଡ ହିଆସିବ, କାରଣ ତୋ ଅଲକ୍ଷଣା ମୁହଁ ଦେଖିବାରୁ ମୋ ନଖ କୋଣରୁ ରକ୍ତ ବାହାରିଲା । ଏକଥା ଶୁଣି ଲୋକମାନେ ଚମକି ଉଠିଲେ, କାହାରି ପାଟିରୁ କଥା ବାହାରିଲା ନାହିଁ । ଗୋପାଳ ବିଚଳିତ ନ ହୋଇ ହାତଯୋଡ଼ି କହିଲା—

ମହାରାଜ ! ଶ୍ରୀଚରଣରେ ମୋର ଗୋଟିଏ ଅଭିଯୋଗ ଅଛି । ସେହି ଅଭିଯୋଗ ପୂରଣ ନ ହେଲେ ହୁଏ ତ ମୋର ପ୍ରେତାତ୍ମା ଘୂରି ବୁଲିବ, ତେଣୁ ଆପଣ ମୋତେ ଆଦେଶ ଦେଲେ ମୁଁ କହିବି ।

ରାଜା ଅନିଚ୍ଛା ସତ୍ତ୍ୱେ ମୁହଁଟି ବିକୃତ କରି କହିଲେ—କ'ଣ କହୁଛ କହ ।

ସେ ଉତ୍ତରରୁ ଗୋପାଳ ନମ୍ରରେ କହିଲା – 'ମହାରାଜ ! ମୁଁ ଭାବିଥିଲି ଆପଣ ରାଜା, ଭଲ ଭଲ ଜିନିଷ ଖାଆନ୍ତି, ତେଣୁ ଆଜି ସକାଳୁ ମୁଁ ଆପଣଙ୍କ ମୁହଁ ଦେଖିଥିଲି । ଆପଣ ମୋ ମୁହଁ ଦେଖି-ଥିବାରୁ ଆପଣଙ୍କର ନଖ କଟିଯାଇ ରକ୍ତ ବାହାରିଲା ; କିନ୍ତୁ ମୁଁ ଆପଣଙ୍କ ମୁହଁ ଦେଖିଥିବାରୁ ଆଜ ସଂସାରରୁ ବିଦାୟ ନେବି ।' ଏଥିରେ ଅଲକ୍ଷଣା ମୁହଁ କାହାର ବିଚାର କରନ୍ତୁ । ଏଥିରେ ରାଜା ଲଜ୍ଜିତ ହୋଇ ଗୋପାଳକୁ କ୍ଷମା ଦେଲେ ।

## ମୂଷା ନୁହେ ଚୁଚୁନ୍ଦ୍ରା

ଏକଦା ଗୋପାଳ ତା'ର ବନ୍ଧୁ ଘରକୁ ଯାଉ ଯାଉ ଭୁଲ୍‌ରେ ଗୋଟିଏ ଗ୍ରାମରେ ପଶିଗଲେ । ସେହି ଗ୍ରାମର ଜଣେ ବୃଦ୍ଧଲୋକ ତମାଖୁ ଖାଉଥାନ୍ତି । ସେହି ବୃଦ୍ଧଲୋକଟି ଗୋପାଳଙ୍କୁ ଡାକ-ପକାଇବାରୁ ଗୋପାଳ ତମାଖୁ ଖାଇବା ଆଶାରେ ସେଠାରେ ଯାଇ ଉପସ୍ଥିତ ହେଲେ । ବୃଦ୍ଧ ଲୋକଟି ଗୋପାଳଙ୍କୁ ତମାଖୁ ନଦେଇ ଗପକରି ଚାଲିଥାନ୍ତି । ତମାଖୁର ଧୂଆଁ ଫଳରେ ଗୋପାଳଙ୍କ ପାଟିରୁ ଲାଳ ବାହାରିଲା । ତେବେ ବୁଢ଼ା ଦେଉ ନ ଥାଆନ୍ତି ।

ଗୋପାଳ ଆଉ ସହି ନପାରି ହୁଁ' ସାତବାର ଖାଇବାକୁ ହାତ ବଢ଼ାଇଲେ । ଗୋପାଳଙ୍କୁ ଲୋକଟି ଥଟ୍ଟା କରି କହିଉଠିଲା— "କହୋ ଗୋପାଳ ! କାଣ୍ଡିଟା ପରି ହାତ ମୁହଁ ବଢ଼ାଉଛ କାହିଁକି ?" ଗୋପାଳ ଉଠିପଡ଼ି କହିଲେ—ଭୁଲ୍ ହୋଇଛି । ମୁଁ ମୂଷା ମନେ କରି ହାତ ମୁହଁ ବଢ଼ାଉଥିଲି ; କିନ୍ତୁ ଦେଖେ ତ ମୂଷା ନୁହେଁ ଚୁଚୁନ୍ଦ୍ରା ।

ଗୋପାଳର କଥା ଶୁଣି ଭଦ୍ରଲୋକଟି ହସିଉଠି ହାତ ଧରି ବସାଇ ଦେଇ ତମାଖୁ ଖାଇବାକୁ ଦେଲେ । ଗୋପାଳ ନିଜର ବୁଦ୍ଧି ବଳରେ ମନଇଚ୍ଛା ତମାଖୁ ଖାଇ ବନ୍ଧୁ ଘରକୁ ଗଲେ ।



## ସବୁ ମୁଖେ ପରସ୍ପା କରେ

କୌଣସି ଏକ ଦିନରେ ଗୋପାଳ ଭଣ୍ଡ ତାଙ୍କର ସମ୍ବନ୍ଧି କୁଟୁମ୍ବିଙ୍କୁ ସଙ୍ଗରେ ନେଇ ଗୃହକୁ ଗମନ କରୁଥାଏ । ବାଟରେ ଆସୁ

ଆସୁ ତାଙ୍କୁ ପରିସ୍ରା ଆସିବାରୁ ଦକ୍ଷିଣ ଦିଗକୁ ମୁହଁ କରି ପରିସ୍ରା କଲା । ଏପରି ଘଣ୍ଟଣାଟି ଦେଖି ବଡ଼ସମୃଦ୍ଧ କହିଲା—ଏ କ'ଣ କରୁଛ ତୁମେ ! ତୁମେ କ'ଣ ଶାସ୍ତ୍ର ପଢ଼ିନା ? ଶାସ୍ତ୍ରରେ ପରା ଲେଖାଅଛି, ଦିନରେ ଦକ୍ଷିଣକୁ ମୁହଁ କରି ପରିସ୍ରା କରିବା ଘୋର ପାପବୋଲି । ବଡ଼ସମୃଦ୍ଧ କଥା ସହିତ ସମତା ରକ୍ଷା କରି ସାନସମୃଦ୍ଧ କହିଲା, କେବଳ ଦକ୍ଷିଣକୁ ନୁହେଁ, ପୂର୍ବକୁ ମୁହଁକରି ପରିସ୍ରା କରିବା ପାପ । ଗୋପାଳ ତ ମହାସ୍ୱଲ୍ପଜ୍ଞ, ତେଣୁ ସେ କହିଉଠିଲା—

ଏ ସବୁ କଥା ପଣ୍ଡିତ ବ୍ରାହ୍ମଣମାନଙ୍କର କଥା । ମୁଁ ତ ମୂର୍ଖଲୋକ, ପଣ୍ଡିତଙ୍କ କଥା କିପରି ଜାଣିବି ? ମୂର୍ଖ ହିସାବରେ ମୁଁ ସବୁ ମୁଖରେ ପରିସ୍ରା କରେ । ବଡ଼ ସମୃଦ୍ଧ ଯେଉଁ ମୁଖରେ କହିଲେ ସେ ମୁଖରେ ପରିସ୍ରା କରେ । ସାନ ସମୃଦ୍ଧ ଯେଉଁ ମୁଖରେ କହିଲେ ସେ ମୁଖରେ ପରିସ୍ରା କରେ ।

ଗୋପାଳ କଥା ଶୁଣି ଦୁଇ ସମୃଦ୍ଧ ମନେ ମନେ ଲଜ୍ଜିତ ହେଲେ । ଏ ସବୁ କଥା କହି ଯାଉଁ ଯାଉଁ ଘରେ ପହଞ୍ଚି ଯାଇଥିଲେ ।



## ଅବତାର ଭକ୍ଷଣ

ଗୋପାଳ ଭଣ୍ଡ ଖୁବ୍ ଚତୁର ଥିବାରୁ ସମସ୍ତଙ୍କ ସହିତ ତାଙ୍କର ବନ୍ଧୁତା ଥିଲା । ଏପରିକି ମୁସଲମାନ କାଶିମ୍ ଅଲିଙ୍କ ସହିତ ଖୁବ୍ ବନ୍ଧୁତା ଥିଲା, ତେଣୁ ସେ ଦୁହେଁ ଅପର ଘରକୁ ଯିବା ଆସିବା

କରୁଥିଲେ । ସବୁଦିନ ପରି କୌଣସି କାରଣବଶତଃ ଏକଦା ଗୋପାଳ ଅଲି ଘରକୁ ଯାଇଥିଲେ । ସେତେବେଳେ ଅଲି ମୁଣ୍ଡାମାଛ ଭକ୍ଷଣ କରୁଥିଲେ । ଗୋପାଳ ଆକାଙ୍କ୍ଷାର ସହିତ ପଚାରିଲେ, କ'ଣ ଭକ୍ଷଣ କରୁଛ ?

ଘଡ଼ଗୁଣ୍ଡାଟି ଗିଳସାରି ଅଲି ମିଆଁ ଉତ୍ତର ଦେଇ ଥଟ୍ଟାରେ କହିଲେ, "ତୁମର ଅବତାର ଭକ୍ଷଣ କରୁଛୁ ।"

ଗୋପାଳ ମନେ ମନେ ଲଜ୍ଜିତ ହେଲେ ଏବଂ ବୁଦ୍ଧି ପାଞ୍ଚି କହିଲେ, "ଆଜ୍ଞା ! ମୋର ତୃତୀୟ ଅବତାର ?"

ଏହା ଶୁଣିବାମାତ୍ରେ ଅଲିମିଆଁ ଘୃଣାରେ ନ ଖାଇ ଉଠି ପଳାଇ ଆସିଲେ ; କାରଣ ମୁସଲମାନମାନେ ବରାହ (ତୃତୀୟ ଅବତାର) ବା ଘୁଷୁରିର ନାଁ ଶୁଣିଲେ ଭୋଜନ କରନ୍ତି ନାହିଁ ।



## ବୃଷ ଉତ୍ସର୍ଗ

କୌଣସି କାରଣ ଉପଲକ୍ଷେ ମୁର୍ଶିଦାବାଦ ନବାବ ସିରାଜ-ଉଦ୍ଦୌଲା କୃଷ୍ଣ ନଗରରେ ଉପସ୍ଥାନ କଲେ । ସେହି କାଳରେ ରାଜାଙ୍କର ଗୋଟିଏ ହୃଷ୍ଟପୁଷ୍ଟ ଷଣ୍ଢ ତାଙ୍କର ଦୃଷ୍ଟି ଗୋଚର ହେଲା । ସେ ଲାଳାୟିତ ହୋଇ ତାଙ୍କ ଉଜିରଙ୍କୁ କହିଲେ, ବାନ୍ଧିରଖ । ତାଙ୍କ ଆଦେଶରେ ଷଣ୍ଢ ବନ୍ଧା ହୋଇ ରହିଗଲା । ଏ କଥା ତ କେବେ ଲୁଚି ରହିବ ନାହିଁ । ଆସ୍ତେ ଆସ୍ତେ ଏ କଥା ରାଜାଙ୍କର କାନରେ ବାଜିଲା । ନବାବଙ୍କ ହାତରୁ ମୁକ୍ତ ପାଇବା ପାଇଁ ରାଜା

ଚିନ୍ତିତ ରହିଲେ ; କାରଣ ସେ ଷଣ୍ଢଟି ମହାରାଜା କୃଷ୍ଣଚନ୍ଦ୍ରଙ୍କର ପିତାଙ୍କ ଶ୍ରାଦ୍ଧ ଉପଲକ୍ଷେ ଉତ୍ସର୍ଗ ; କିନ୍ତୁ ବର୍ତ୍ତମାନ ନବାବ ପାଖରେ ରହିଛି ଜବାଇ ପାଇଁ ।

ଷଣ୍ଢଟିକୁ ଉଦ୍ଧାର କରିବାପାଇଁ ସଭାସଦଙ୍କ ମଧ୍ୟରେ ହାହାକାର ପଡ଼ିଗଲା । କାହାରିକୁ କିଛି ବୁଦ୍ଧି ବାଟ ଦିଶିଲା ନାହିଁ । ଯାହାକୁ ରାଜା କହିଲେ ଷଣ୍ଢଟିକୁ ଉଦ୍ଧାର କରିବାପାଇଁ, କେହି ସାହସ କଲେ ନାହିଁ ନବାବଙ୍କ ଶିବିରକୁ ଯିବାପାଇଁ ; ତେଣୁ ରାଜା ଅନ୍ଧ, ମୂକ ଓ ବଧିର ହୋଇ ବସି ରହିଲେ ।

ଠିକ୍ ସେତିକିବେଳେ ଗୋପାଳ ଭଣ୍ଡ ଯାଇ ରାଜସଭାରେ ଉପସ୍ଥିତ ହେଲା । ରାଜାଙ୍କର ବିଷଣ୍ଣ ବଦନ ଦେଖି ସମସ୍ତ କଥା ପଚାରିବାରୁ ରାଜା କହିଲେ, ମୋର ପିତୃଶ୍ରାଦ୍ଧ ବୃଷୋତ୍ସର୍ଗ ଷଣ୍ଢଟିକୁ ନବାବ ଜବାଇ ପାଇଁ ବାନ୍ଧି ରଖିଛି, ତେଣୁ ମୁଁ କହୁଛି, ଯେ ଉଦ୍ଧାର କରି ଆଣି ଦେବ, ମୁଁ ତାକୁ ଆଶାତୀତ ଧନ ଦେବି । ଏହି କଥା ଶୁଣି ଗୋପାଳ ହସି ହସି କହିଲା, ମୁଁ ଏହି ଘଣ୍ଟାକ ମଧ୍ୟରେ ଉଦ୍ଧାର କରି ଆଣିଦେବି ।

ରାଜା ଚମକି ଉଠି କହିଲେ—ନା ଗୋପାଳ ! ତା' ହେବ ନାହିଁ । ନବାବ ଏ ସବୁ କଥା ଜାଣିଲେ ମୋତେ ଛାଡ଼ିବେ ନାହିଁ । ଏହା ଶୁଣି ଗୋପାଳ କହିଲା—ମହାରାଜ ! ଆପଣ ଚିନ୍ତା କରନ୍ତୁ ନାହିଁ । ମୋତେ ଅନୁମତି ଦିଅନ୍ତୁ, ମୁଁ ମୋର ମନଗଢ଼ା ବୁଦ୍ଧିରେ ଷଣ୍ଢଟିକୁ ଉଦ୍ଧାର କରି ଆଣିବି—ଆପଣଙ୍କ ଉପରକୁ ଆଞ୍ଚ ଆସିବ ନାହିଁ ।

ଏତିକ କହି ଗୋପାଳ ନବାବଙ୍କ ଶିବିରରେ ପହଞ୍ଚିବାରୁ, ନବାବ ପଚାରିଲେ, ଏ କିଏସେ ଉଜୀର ? ଉଜୀର କହିଲା, ଏ କୃଷ୍ଣଚନ୍ଦ୍ରଙ୍କର ଭଣ୍ଡ । ଏହା ସୁନ୍ଦର କଥାବାର୍ତ୍ତା କଲେ ହସି ହସି ପେଟକୁ ମଧ୍ୟ ଭୁଲିଯିବେ ।

ନବାବ ଏହା ଶୁଣି ଗୋପାଳକୁ ପାଖରେ ବସାଇଲେ ଏବଂ ବହୁତ କଥାବାର୍ତ୍ତା ହେଲେ । ଗୋପାଳ ବହୁ କଥାବାର୍ତ୍ତା ପରେ କିଛି ନ ଜାଣିଲା ପରି ଷଣ୍ଢଟିକୁ ଦେଖି ପଚାରିଲା, ହଜୁରଙ୍କ ? ଏ ଷଣ୍ଢଟିକୁ କାହିଁକି ବାନ୍ଧିଛନ୍ତି ? ନବାବ କହିଲେ, ଏ ବହୁତ ହୃଷ୍ଟପୁଷ୍ଟ ; ତେଣୁ ଏହାକୁ ଜବାଇ କରିଲେ ବହୁତ ମଜାରେ ଖାନା ହେବ ।

ଗୋପାଳ କହିଲା, ସତେ ନା ହଜୁରଙ୍କ ! ତା ହେଲେ ଏ ଦେଶରୁ ଆତଙ୍କ ଗଲା ।

ନବାବ ପଚାରିଲେ—କାହିଁକି ଗୋପାଳ ?

ଗୋପାଳ କହିଲା, ଏହା ହେଉଛି ବିଷମ କଥା । ଏହା ଜ୍ୱାଳାରେ ଲୋକେ ଅସ୍ଥିର । ଆପଣ ଏହାକୁ ଜବାଇ କଲେ ଲୋକେ ଆପଣଙ୍କୁ ଦୁଇହାତ ଟେକି ଆଶୀର୍ବାଦ କରିବେ ।

ନବାବ ଆଶ୍ଚର୍ଯ୍ୟ ହୋଇ କହିଲେ, ଏ କ'ଣ କିଛି ଅନିଷ୍ଟ କରେ ?

ଗୋପାଳ କହିଲା, ଆଜ୍ଞା ତାହା ଅନିଷ୍ଟ ପରି ଅନିଷ୍ଟ ନୁହେଁ । କାହାକୁ ଶିଙ୍ଗରେ ଟେକି ଫିଙ୍ଗିଦିଏ, କାହାକୁ ବା ଗୋଡ଼ରେ ପକାଏ । ଗୋପାଳ କଥାଟାକୁ ବଢ଼ାଇ ଦେବାପାଇଁ ଆହୁରି କହିଲା,

ଲୋକମାନଙ୍କୁ ଏ ଝାଡ଼ାଫେରାଇ ଦଏନା । ସବୁବେଳେ ପଛଆଡ଼େ ବୁଲୁଥାଏ । କେହି ଲୋକ ଝାଡ଼ା ଫେରିବା ମାତ୍ରେ, ହଠାତ୍ ସେ ଦୌଡ଼ିଯାଇ ଶିଘ୍ରରେ ଠେଲି ମଇଳାକୁ ଖାଇଦଏ । ଖାଲି ମଇଳା ଛଡ଼ା କିଛି ଖାଏନା । ଏହି ଭୟରେ ଲୋକେ ତାକୁ ଘାସ, କୁଟା, କୁଣ୍ଡା, ତୋରାଣି ଦେଲେ ଛୁଏଁନା । ଖାଲି ମଇଳା ଖାଇ ଖାଇ ଏପରି ହୋଇଛି ।

ଏକଥା ଶୁଣି ନବାବ ଘୃଣାରେ ମୁହଁ ବୁଲାଇ ଦେଲେ । ଷଣ୍ଢଟାକୁ ତାଙ୍କ ଆଦେଶରେ ଫିଟାଇ ଦଆଗଲା । ଷଣ୍ଢଟି ଦୌଡ଼ି ଯାଇ ରାଜ ଦରବାରରେ ପହଞ୍ଚିଗଲା । ତା ପରେ ଗୋପାଳ ଯାଇ ରାଜସଭାରେ ପହଞ୍ଚିବାରୁ ରାଜା ତାକୁ ବହୁତ ପ୍ରଶଂସା କଲେ ଏବଂ ଆଶାଧିକ ଧନ ଦେଇ ବିଦାୟ ଦେଲେ ।

—※—

## ମୁହାଁମୁହିଁ ଜବାବ

କୃଷ୍ଣ ବାଇଦ ସହସ୍ର କୋଶ ପରି ଗୋପାଳର ଗୁଣ ଗ୍ରାମ ଚାରିଆଡ଼େ ଖେଳିଗଲା । ସେ ଯେଉଁଆଡ଼େ ଯାଉଥିଲା, ଲୋକେ ତାକୁ ଦେଖିବାପାଇଁ ତା ପଛେ ପଛେ ଧାଉଁଥିଲେ । ତା'ର କଥା ଶୁଣିବା ଲୋକମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଗୋପାଳର ଦୂର ଅଞ୍ଚଳରେ ବନ୍ଧୁ ଘର ଥିଲା । କୌଣସି କାର୍ଯ୍ୟ ଉପଲକ୍ଷେ ସେ ସେଠାକୁ ଯାଇଥିଲା । ସେଠାକାର ଜମିଦାର ତ ଆଗରୁ ଗୋପାଳର ଗୁଣ ଜାଣିଥିଲେ ; ତେଣୁ ଗୋପାଳ ଆସିଥିବା ଶୁଣି

ଗୋପାଳକୁ ଗୋଟିଏ ସଭା କରି ଡକାଇ ପଠାଇଲେ । ଜମିଦାରଙ୍କ ଡାକରା । ସେ ସଙ୍ଗେ ସଙ୍ଗେ ଲୁଗାପଟା ପିନ୍ଧି ଯାଇ ହାଜର ହେଲା ।

ଗୋପାଳ ଭଣ୍ଡ ଜାତିରେ ବାରିକ । ଦେଖିବାକୁ କମୁଚ କମାକାର ଭଳ । ତା'ର ପୋଷାକ ପରିଚ୍ଛଦ ଅତି କଦର୍ଯ୍ୟ, ତେଣୁ ସେ ତାକୁ ଆତ୍ମଗର୍ବରେ ପଚାରିଲେ, ଆରେ ତୋ ନାଁ କ'ଣ ? ଜମିଦାରଙ୍କ ଅଝାଳଆ କଥା ଶୁଣି ସଭାସଦ୍ ଲୋକେ ହସି ଉଠିଲେ; କିନ୍ତୁ ଗୋପାଳ ତ ଏଥିରେ ଟଳିବାର ଲୋକ ନୁହେଁ । ଜମିଦାରଙ୍କର ଏପରି ଅଭ୍ୟର୍ଥନାରେ ସାହସ୍ୟ ବଦନରେ ବିନୀତ ସ୍ୱରରେ କହିଲା—ଆଜ୍ଞା ! ଭଦ୍ର ସମାଜର ସମ୍ଭ୍ରାନ୍ତ ବ୍ୟକ୍ତିମାନେ ମୋତେ ଗୋପାଳ ବୋଲି ଡାକନ୍ତି । ଆଉ ଅତି ନୀଚ ବା ଅଜ୍ଞମ ଲୋକମାନେ ଗୋପାଳଆ ବୋଲି ଡାକନ୍ତି ।

ଗୋପାଳ ଭଣ୍ଡର ଏହିପରି ମୁହଁାମୁହିଁ ଜବାବ ଶୁଣି ଲୋକମାନେ ଆଗ ଅପେକ୍ଷା ଜୋର୍‌ରେ ହସି ଉଠିଲେ । ଜମିଦାରଙ୍କ ମୁହଁ ଲଜ୍ଜାରେ କଳା ପଡ଼ିଗଲା । ସେ ଗୋପାଳଠାରୁ ଗୋଟିଏ ହିତ ଉପଦେଶ ପାଇ ଗୋପାଳକୁ ଅଭ୍ୟର୍ଥନା କଲେ ଏବଂ ବହୁ ପୁରସ୍କାର ଦେଇ ବିଦାୟ ଦେଲେ ।

—❀—

## ଖଟ୍ଟାଙ୍ଗ ପୁରାଣ

ଦିନକର କଥା । ରାଜା କୃଷ୍ଣଚନ୍ଦ୍ର ଦେବ ଅତ୍ୟନ୍ତ ଦୁଃଖିତ ମନରେ ସିଂହାସନରେ ଅବସ୍ଥାନ କରିଥାନ୍ତି । ପାତ୍ରମନ୍ତ୍ରୀମାନେ

ଉପୁରେ ରାଜାଙ୍କ ପାଖକୁ ଯାଉ ନଥାନ୍ତି । ଏହି ସମୟରେ ଗୋପାଳ ସେଠାରେ ଉପସ୍ଥିତ ହେଲ । ରାଜାଙ୍କ ଆଦେଶରେ ଗୋପାଳପାଇଁ ଦ୍ୱାର ସବୁବେଳେ ଉନ୍ମୁକ୍ତ ; ତେଣୁ ସେ ସିଧାସଳଖ ଯାଇ ମହାରାଜାଙ୍କ ନିକଟରେ ପହଞ୍ଚି ମିନତିଭରା କଣ୍ଠରେ କହିଲ, ମହାରାଜ ! ଆପଣଙ୍କର ପୂର୍ଣ୍ଣଚନ୍ଦ୍ର ମୁଖ କାହିଁକି ମଳିନଭାବରେ ମୁର୍ଚ୍ଛି । ଯଦି କିଛି ଦୁର୍ଘଣା ଘଟିଛି, ତାହା ପ୍ରକାଶ କଲେ ସିନା ଅଧମ ସମାଧାନ ପାଇଁ ଚେଷ୍ଟା କରିବ ।

ଗୋପାଳର କଥା ଶୁଣି ରାଜା କହିଲେ, ମୋର ନିର୍ବୋଧତା ଦୃଷ୍ଟିରୁ ମୁଁ ଅମୃତକୁଣ୍ଡିଟିକୁ ବିଷମୟ କରି ପକାଇଛି । ଅର୍ଥାତ୍ ଏକଦା ନବାବ କେତେଗୁଡ଼ିଏ ଜ୍ୟୋତିର୍ବିଦ୍‌ମାନଙ୍କୁ ଡକାଇ ପଠେଇଲେ । ମୁଁ ଦ୍ୱିଧା ପ୍ରକାଶ ନକରି ସମସ୍ତଙ୍କୁ ପଠାଇ ଦେଲି । ସେମାନଙ୍କୁ ମାଟିତଳେ କ'ଣ ଅଛି ବୋଲି ପଚାରିଲେ ନବାବ ; କିନ୍ତୁ ଏମାନେ କିଛି ଉତ୍ତର ଦେଇ ନପାରିବାରୁ ବନ୍ଦୀ ହୋଇ ବହୁତ କଷ୍ଟ ଅନୁଭବ କରୁଛନ୍ତି । ଗୋପାଳ ! ତୁମେ କ'ଣ ଏହାର ପ୍ରତିକାର କରିପାରିବ ?

ଏ କଥା ଶୁଣି ଗୋପାଳ ହସ ହସ ହୋଇ କହିଲ—ଆପଣ ଏତ ସାମାନ୍ୟ କଥା ପାଇଁ ଚିନ୍ତିତ ? ଆପଣ ଏହି ଅଧମକୁ ଆଦେଶ କରନ୍ତୁ ମୁଁ ସବୁ କରିଦେବ, ଅର୍ଥାତ୍ ମୁଁ ସମସ୍ତଙ୍କୁ ମୁକୁଳାଇ ଆଣିବ । ରାଜା ଗୋପାଳର ମୁହଁକୁ ଚାହିଁ ଅଳ୍ପ ହସି କହିଲେ, ପାରିବ ତ ଗୋପାଳ ? ନ ପାରିଲେ ଯେ ସେ ସଇତାନ ତୁମକୁ ବନ୍ଦୀ କରି ପଣ୍ଡିତମାନଙ୍କ ସହିତ ରଖିବ ।

ଗୋପାଳ କହିଲ, ସେଥିପାଇଁ ଚିନ୍ତା କରନ୍ତୁ କାହିଁ ମହାରାଜ ! ଆପଣଙ୍କ ଆଶୀର୍ବାଦରୁ ମୁଁ ସେହିଭଳି ନବାବଙ୍କୁ

ପକେଟ ମଧ୍ୟରେ ରଖିଦେଇ ପାରେ । ଆଉ କେତେକଙ୍କୁ ଫୁଙ୍କରେ ଉଡ଼ାଇ ଦେଇପାରେ ; ତେଣୁ ଆପଣ ମୋତେ ହବାସ୍ତୁ ହଅନ୍ତୁ । ଆଜଠାରୁ ଜାଣନ୍ତୁ ଯେ ଆପଣଙ୍କର ପଣ୍ଡିତମାନେ ମୂର୍ଖ ।

ଯାହା ଯେପରି ହେଉ, ଗୋପାଳ କଥା ଶୁଣି ମହାରାଜ ଟିକଏ ଶାନ୍ତରେ ଅନ୍ତଃପୁରକୁ ଗଲେ । ଗୋପାଳ ନିଜ ଘରେ ପହଞ୍ଚି ବହୁତ ଖୋଜାଖୋଜ ପରେ ଗୋଟିଏ ଭଙ୍ଗା ଖଟିଆର ଗୋଡ଼ ପାଇଲା । ସେହି ଗୋଡ଼ଟିରେ ନାନା ପ୍ରକାର ଛୁଣ୍ଡାକନା, କନାଧଡ଼ି ଓ ଡୋର ଗୁଡ଼ାଇ ମଜଭୁତ କରି ବାନ୍ଧି ରଖିଲା । ତା'ପରେ ସେ ଗୋଡ଼ଟିକୁ ଗୋଟିଏ ଖଟୁଲି ମଧ୍ୟରେ ଥୋଇ ପୂଜା ଅର୍ଚ୍ଚନା କରି ତାକୁ ଖଟ୍ବାଙ୍ଗ ପୁରାଣ ନାମରେ ନାମିତ କଲା । ନିଜେ ତତାଚୈତନ୍ୟ ଜାତି ଖଟ୍ବାଙ୍ଗ ପୁରାଣକୁ ନେଇ ନବାବଙ୍କ ସଭା ମଧ୍ୟରେ ପ୍ରବେଶ କରି 'ଜୟ ନବାବ ବାହାଦୁରଙ୍କର ଜୟ' ବୋଲି କହିଉଠିଲା । ନବାବସାହେବ ଗୋପାଳକୁ ଜଣେ ପଣ୍ଡିତ ମନେକରି ପଚାରିଲେ ମହାଶୟ ! ଏଠାକୁ ଆସିବାର ଅଭିପ୍ରାୟ ?

ଗୋପାଳ ସଙ୍ଗେ ସଙ୍ଗେ କହି ପକାଇଲା—ଆପଣଙ୍କ ନିକଟକୁ ମୋତେ ରଜା କୃଷ୍ଣଚନ୍ଦ୍ର ପଠାଇଛନ୍ତି । ମୁଁ ତାଙ୍କର ଜଣେ ସଭା ପଣ୍ଡିତ । ମୋର ନାମ ଗଣକ ଚୂଡ଼ାମଣି । ଆପଣଙ୍କର ବୋଧହୁଏ ଖ୍ୟାତନାମା ଜ୍ୟୋତିର୍ବିଦ ଦରକାର ଥିଲେ ; ତେଣୁ ମୁଁ ଆସିଛି ।

ହଁ ହଁ ମୋର ଜଣେ ଜଣାଶୁଣା ପଣ୍ଡିତ ଦରକାର ଥିଲା । ଆପଣ କହି ପାରିବେ, ପୃଥିବୀ ତଳେ କ'ଣ ଅଛି ? କହିପାରିଲେ

ତୁମକୁ ଆଶାତୀତ ପୁରସ୍କାର ଦିଆଯିବ । କହି ନ ପାରିଲେ ତୁମେ ବନ୍ଦୀ ହୋଇ ରହିବ ।

ଗୋପାଳ ଟିକିଏ ରହିଯାଇ ଖଣ୍ଟାଙ୍କ ପୁରାଣକୁ ମୁଣ୍ଡିଆଟିଏ ମାରି କହିଲା, ଜାହାଁପନା ! ମୁଁ ଜଣେ ଅଦ୍ୱିତୀୟ ଜ୍ୟୋତିର୍ବିଦ । ଜୀବନରେ ତାହା ସବୁ ସାଧି ସାଧି ଉଦର ମୋର ବର୍ତ୍ତୁଳ ହୋଇ ଯାଇଛି । ଏଣିକି ଆଉ ଖଡ଼ି ଧରିବା ଦରକାର ହେଉନାହିଁ । ଯାହା କହୁଛି ଏହି ପୁରାଣ । ଏହି ପୁରାଣ କଥାକୁ ନେଇ ମୋ ବ୍ୟାଖ୍ୟା କରିବାର କଥା ।

ଏହି ପୁରାଣରେ କ'ଣ ସବୁ ଲେଖା ହୋଇଛି ?

—ନା ଲେଖା ହୋଇ ନାହିଁ । ଯେ ଯାହା ପଚାରିବ ତାହାର ଉତ୍ତର ସଙ୍ଗେ ସଙ୍ଗେ ପାଇଯିବ ; କିନ୍ତୁ ସେ ଅକ୍ଷରକୁ ମୋ ଛଡ଼ା କେହି ଦେଖି ପାରିବେ ନାହିଁ । ଭଲହେଉ ବା ମନ୍ଦହେଉ ମୁଁ ସବୁ ପଢ଼ି ଶୁଣାଇ ଦେବି । ଏହା ଶୁଣି ନବାବ କହିଲେ, ଆପଣ ଆଜି ବିଶ୍ରାମ କରନ୍ତୁ । କାଲି ଏହାର ଉତ୍ତର ଦେବେ ।

ନବାବ ଏକାକିଆ ଗୋପାଳ ରହିବା ଓ ଖାଇବାର ସମସ୍ତ ବ୍ୟବସ୍ଥା କରି ଦେଲେ । ଗୋପାଳ ନବାବ ଖିଲ୍‌ରେ ସେଦିନ ଭୋଜନ କରି କହୁତ ଆରାମରେ ରହିଲା । ତା ପରଦିନ ସଭା ହେଲା । ନବାବ ସଭାକରି ବସିଥିବା ସମୟରେ ଗୋପାଳକୁ ଡକରା ଦିଆଗଲା । ଗୋପାଳ ତାର ଖଣ୍ଟାଙ୍କ ପୁରାଣ ନେଇ ସେଠାରେ ଉପସ୍ଥିତ ହେଲା । ତାକୁ ଉପଯୁକ୍ତ ଆସନ ଦେଇ କହିଲେ, ପଣ୍ଡିତ ମହାଶୟ ! ପୃଥିବୀ ତଳେ କ'ଣ ଅଛି ଓ ଭୂମିକମ୍ପ କାହିଁକି ହୁଏ ? ଏହା ଗଣନା କରି କୁହନ୍ତୁ ।

ନବାବଙ୍କ ଆଦେଶ ପାଇ ଗୋପାଳ ଚଳାଆସନ ପକାଇ ବସିଲା । ତା'ପରେ ଖଣ୍ଟିଆ ଖୁରୁକୁ ଗୋଟଏ ନମସ୍କାର କରି ଖଣ୍ଟୁଳିରୁ ଉଠାଇ ଆଣି ଗୁଡ଼ା ହୋଇଥିବା ଡୋରକୁ ଫିଟାଇବାକୁ ଲାଗିଲା । ଆଉ ଗୋଟିଏ ପରସ୍ତ ବାନ୍ଧଥାଏ, ପୁଣି ଗୁଡ଼ାଇବାକୁ ଲାଗିଲା । ଏହିପରି ବାରମ୍ବାର ଖୋଲୁଥାଏ ଏବଂ ଗୁଡ଼ାଉଥାଏ । ନବାବ ଏସବୁ ଲକ୍ଷ୍ୟ କରୁ କରୁ କହିଲେ-- କହୋ ପଣ୍ଡିତ ! ମୋ ପ୍ରଶ୍ନର ଉତ୍ତର ନ ଦେଇ ବାରମ୍ବାର ଡୋର ଫିଟାଇବାରେ ଲାଗିଛ କ'ଣ ? ଏଟା କ'ଣ ତୁମର ଠକାମି ନା ବାତୁଳତା ?

ଏ କଥା ଶୁଣି ଗୋପାଳ ଧୀର ସ୍ୱରରେ କହିଲା—ଆଜ୍ଞା ! ଯାହା ମୋ ପୋଥିରେ ଲେଖାଅଛି, ତାହା ଆପଣଙ୍କ ବିଶ୍ୱାସଯୋଗ୍ୟ ହେବ କି ନାହିଁ, ତେଣୁ ମୁଁ କହୁନାହିଁ । ଆପଣ ଅଭୟ ଦେଲେ ମୁଁ କହିବି । ନବାବ ସାନ୍ତ୍ୱନା ଦେଇ କହିଲେ—ଭୟ କରିବାର କୌଣସି କାରଣ ନାହିଁ । ଆପଣ କ'ଣ ମିଛ କହୁଛନ୍ତି ? ପୁରାଣ; କୋରାନ୍ ଉଭୟ ତ ସମାନ । ଯାହାକି ପୁରାଣରେ ଉଲ୍ଲେଖ ଅଛି ତାହାହିଁ କହିବେ, ସେଥିରେ କ୍ଷତି କ'ଣ ? ମୁଁ ଅଭୟ ଦେଲି ଯାହା ଲେଖାଅଛି ତାହା କୁହ ।

ନବାବ କଥାରେ ଗୋପାଳ ସଳଖି ବସିଲା, ପୋଥିକୁ କୋଡ଼କୁ ନେଇ କହିଲା, ନବାବ ବାହାଦୁରସାହ ! ଯାହାଲେଖାଅଛି ତାହା ପଢ଼ୁଛି ଶୁଣନ୍ତୁ । ମହାରାଜ ! ଆପଣ ଭୋଗବିଳାସରେ ସବୁବେଳେ ଲିପ୍ତଥାଇ ବାହାର ଦୁନିଆ ବିଷୟରେ କିଛି ଜାଣିପାରୁ ନାହାନ୍ତି । ଏହି ଖଣ୍ଡିଆଙ୍କ ପୁରାଣ ପ୍ରମାଣ ଦେଉଛି କି ହିନ୍ଦୁ, ମୁସଲମାନ ଉଭୟ ମଣିଷ ହେଲେହେଁ ଉଭୟ ଦୁଇଟି ଧର୍ମରେ ଦୀକ୍ଷିତ । ହିନ୍ଦୁମାନେ ମଲେ ତାଙ୍କ ମୃତ ଦେହକୁ ପୋଡ଼ି

ଦିଆଯାଉଥିବାରୁ ଧୂଆଁ ବାହାର ମହାଶୂନ୍ୟକୁ ଉଠିଯାଏ, ତେଣୁ ହିନ୍ଦୁମାନେ ସୂର୍ଯ୍ୟପରାଗ, ଚନ୍ଦ୍ରଗ୍ରହଣ ଓ ଗ୍ରହ ନକ୍ଷତ୍ରଙ୍କ ବିଷୟରେ ଗଣନାକରି ଆକାଶ ବିଷୟରେ କହିପାରନ୍ତି । ମୁସଲମାନମାନେ ମଲେ ତାଙ୍କୁ ମାଟି ତଳେ ପୋତି ଦିଆଯାଏ । ସେମାନଙ୍କ ମାଂସ, ଅସ୍ଥି ଓ ଚର୍ମ ସମସ୍ତ ମିଳାଇ ଯାଇ ମାଟିରେ ମିଶିଯାଏ, ତେଣୁ ଯବନ ମୌଲବୀମାନେ ମାଟିରେ କ'ଣ ଅଛି, କାହିଁକି ବା ଭୂମିକମ୍ପ ହେଉଛି, ଏସବୁ ଗଣନା କରି କହିପାରନ୍ତେ, ତେଣୁ ଆପଣ ଯଦି ମାଟିତଳର କଥା ଜାଣିବାକୁ ଚାହାନ୍ତି, ହିନ୍ଦୁ ପଣ୍ଡିତମାନଙ୍କୁ ମୁକ୍ତ କରି ମୁସଲମାନ ପଣ୍ଡିତମାନଙ୍କୁ ପଚାରନ୍ତୁ । ଇତି ।

ପ୍ରତାପ ନବାବ ବାହାଦୁରଙ୍କ ପ୍ରଶ୍ନର ଖଣ୍ଠାଙ୍କ ପୁରାଣ ଗଣ୍ଠି କରି ଫିଟି ଉତ୍ତର ଦେଇ ଝଟ୍‌କରି ବନ୍ଦକଲେ । ଏଣିକି ଗଣକ ଚୂଡ଼ାମଣି ବିଦାକା ନେଇ ବିଦାୟ ।

ଗୋପାଳ ଏଣିକି ପଡ଼ିସାର ପୁରାଣକୁ ବାନ୍ଧି ଗଣ୍ଠିଲି ଉପରେ ଭକ୍ତି ନମସ୍କାର କଲା । ସଭା ଲୋକମାନେ ଯଥାର୍ଥ ଯଥାର୍ଥ ବୋଲି କହିଉଠିଲେ । ନବାବ ଭାବିଲେ ଗଣକ ଚୂଡ଼ାମଣି ଯାହା କହୁଛନ୍ତି ତାହା ଦୃକୃତ କଥା । ମୁଁ ନଜାଣି ହିନ୍ଦୁ ପଣ୍ଡିତଙ୍କୁ ବନ୍ଦୀ କରି ରଖିଥିଲି, ତେଣୁ ସେ ହିନ୍ଦୁ ପଣ୍ଡିତମାନଙ୍କୁ ମୁକ୍ତ ଦେଇ ଜଳଦଙ୍କୁ ହୁକୁମ ଦେଲେ—ମୁସଲମାନ ମୌଲବୀ ଅର୍ଥାତ୍ ପଣ୍ଡିତମାନଙ୍କୁ ଡାକ ପଚାର । ନ କହି ପାରିଲେ ସେମାନେ ବନ୍ଦୀ ହେବେ ।

ଏ ପାଖରେ ଗୋପାଳ ହିନ୍ଦୁ ପଣ୍ଡିତମାନଙ୍କୁ ନେଇ ରାଜା କୃଷ୍ଣଚନ୍ଦ୍ର ଦେବଙ୍କ ରାଜସଭାରେ ଜୟ କୃଷ୍ଣଚନ୍ଦ୍ର କହି ପହଞ୍ଚିଲେ । ରାଜା ଗୋପାଳର ପର ବୁଦ୍ଧି ଦେଖି ତାକୁ ଅନେକ ଉପହାର ଦେଲେ ।



## କୃଷ୍ଣଚନ୍ଦ୍ରଙ୍କର କୋଷ୍ଟସାଫ୍

ସମୟର ଚକ ଗଡ଼ି ଚାଲିଥାଏ । ତାହା କାହାରିକୁ ଅପେକ୍ଷା କରେ ନାହିଁ । ଯାହାହେଉ, ଭଗବାନଙ୍କ ଦୟାରୁ ରାଜା କୃଷ୍ଣଚନ୍ଦ୍ର-ଙ୍କର ଗୋଟିଏ ପୁଅ ହେଲା । ପ୍ରଜାମାନଙ୍କ ମଧ୍ୟରେ ବହୁତ ଆନନ୍ଦ ଖେଳିଗଲା । ରାଜା ପଚାରିଲେ--ମୋ ପୁଅ ହେବା ପରେ ତୁମକୁ କପରି ଲାଗୁଛି ? ଏକଥା ଶୁଣି ଜଣେ କହିଲା, ମୋ ମନ ବହୁତ ଖୁସି । ଜଣେ କହିଲା—ଅନ୍ଧ ଚକ୍ଷୁ ପାଇଲା ପରି ଲାଗୁଛି । ଆଉ ଜଣେ କହିଲା—ରଙ୍କ ଧନ ପାଇଲା ପରି ଲାଗୁଛି । ଶେଷରେ ଗୋପାଳକୁ ପଚାରିବାରୁ ଗୋପାଳ କହିଲା—କୋଷ୍ଟସାଫ୍, ଅର୍ଥାତ୍ ଝାଡ଼ା ଫେରି ସାରିବା ପରେ ଯେପରି ସୁଖ ଅନୁଭବ ହୁଏ ସେହିପରି ଲାଗୁଛି । ରାଜା ବହୁତ ବିରକ୍ତି ପ୍ରକାଶ କଲେ ; କିନ୍ତୁ ଗୋପାଳ ମନେ ମନେ ଭାବିଲେ, ମୁଁ ଏହାର ଅର୍ଥ ଦିନେ ବୁଝାଇ ଦେବି । କୌଣସି କାରଣରୁ ଦିନେ ରାଜା କୃଷ୍ଣଚନ୍ଦ୍ର ଓ ଗୋପାଳ ଦୁହେଁ ନଦୀରେ ନୌକାରେ ବୁଲୁଥାନ୍ତି । ବୁଲୁ ବୁଲୁ ବହୁତ ବେଳ ହୋଇ ଯିବାରୁ ରାଜାଙ୍କୁ ଖୁବ୍ ଝାଡ଼ା ଦେଖାଇଲା , ତେଣୁ କହିଲେ, ଗୋପାଳ ! ନୌକା ଟିକେ କୂଳକୁ ଲଗା ମୁଁ ପୋଖରୀପାଣି ଯିବି । ଗୋପାଳ କହିଲା—ଆଜ୍ଞା ! ଏ ଜଙ୍ଗଲରେ ବହୁତ ବଡ଼ ବଡ଼ ବାଘ ଅଛନ୍ତି, ଆଗକୁ ଚାଲନ୍ତୁ । କିଛି ନ କହି ରାଜା ଆଗକୁ ଯାଇ ଡାକିଲେ—ଏଇଠାରେ ରଖ । ଗୋପାଳ କହିଲେ—ନାଇଁ ଆଜ୍ଞା ! ଏଠାରେ ବହୁତ ସାପ ଅଛନ୍ତି, କାହିଁକି ଜାଣି ଜାଣି ବିପଦକୁ ଡାକିବା କରିବେ ? ଆଉ ଟିକଏ ଆଗକୁ ଚାଲନ୍ତୁ । ରାଜା ତଥାପି କିଛି ନ କହି ଆଗକୁ ଯାଇ କହିଲେ—ଗୋପାଳ, ମୁଁ ଆଉ ସହିପାରୁନି, ନୌକାଟା ଏହି ଠାକୁରେ ଲଗାଅ । ଗୋପାଳ କହିଲା—ଯାହା

ଯେମିତ ହେଉ ଆଉ ଟିକଏ ଅପେକ୍ଷା କରନ୍ତୁ ; କାରଣ ଏଠାରେ ମାଳ ମାଳ କୁମ୍ଭୀର ଅଛନ୍ତି । ରଜା ବାଧହୋଇ ଜାକ ଜୁକ ହୋଇ ବସିଲେ । କଚ୍ଛିଦୂର ଗଲାପରେ ପୁଣି କହିଲେ—ଗୋପାଳ ଏଇଠାରେ ଲଗାଅ । ଆଉ ମୁଁ ସମ୍ଭାଳ ପାରିବ ନାହିଁ । ଗୋପାଳ ଦେଖିଲେ, ଏଥର ରଜା ଲୁଗାପଟାରେ ବ ଝାଡ଼ାଫେରି ପକାଇବେ, ତେଣୁ ଗୋଟିଏ ଗ୍ରେଟ ବଣ ପାଖରେ ଲଗାଇଲେ ।

ରଜା ହାଠାତ୍ ନୌକାରୁ ଡେଇଁପଡ଼ ଯାଇ ଗୋଟିଏ ଗ୍ରେଟ ବୁଦା ଉହାଡ଼ରେ ବସିଗଲେ । ପୋଖରୀପାଣି ସାର ଆସି ନୌକାରେ ବସି କହିଲେ, ଗୋପାଳ ନୌକା ଚଳାଅ । ଗୋପାଳ ପଚାରିଲେ—ମହାରଜ ! ଏଥର କପର ସୁଖ ଲାଗୁଛି ? ରଜା ଘାର୍ଘ ନିଃଶ୍ୱାସ ପକାଇ କହିଲେ, ଆଃ ସେ କଥା କହନାହେ ଗୋପାଳ । ତୁ ମୋତେ ବଞ୍ଚାଇଲୁ, ବର୍ତ୍ତମାନ ଯାହାଙ୍କ ସୁଖ ତାହା କହିହେବ ନାହିଁ । ତହୁଁ ଗୋପାଳ ଥଟାରେ ହାତଯୋଡ଼ କହିଲ, ମହାରଜ ! ସେଦନ କଥା ମନେ କରନ୍ତୁ । ଆପଣଙ୍କର ପୁଏ ଜନ୍ମ ପରେ ମୁଁ କହିଥିଲ ଯାହା·····; କନ୍ତୁ ଆପଣ ମୋ ଉପରେ ବରକ୍ତ ହୋଇଥିଲେ । ଗୋପାଳର କଥା ଶୁଣି ରଜା ନଜ କଥାକୁ ନଜେ ଭୁଲ୍ ବୁଝିପାରି ନରୁତ୍ତର ରହିଲେ ।



## ପୋଡ଼ାମୁହଁରେ ସବୁ ସୁଆଦ

ଦନେ ରଜା କୃଷ୍ଣଚନ୍ଦ୍ର ଭୋଜନ କର ବସୁଥିବା ସମୟରେ କୌଣସି କାରଣବଶତଃ ଗୋପାଳ ଭଣ୍ଡ ସେଠାରେ ଉପସ୍ଥିତ

ହେଲା । ରାଜା ହଠାତ୍ ପଚାରି ଉଠିଲେ—ଗୋପାଳ, ଆଗେ କ'ଣ ଖାଇଲେ ଭଲ ? ଗୋପାଳ କହିଲା—ଆଗେ ପୋଡ଼ା ଖାଇବା ଉଚିତ୍ । ତା'ପରେ ପୋଡ଼ା ମୁହଁରେ ଯାହା ଖାଇବେ, ସବୁ ସୁଆଦ ଲାଗିବ । ରାଜା ଏହା ଶୁଣି ମନେ ମନେ ଲଜ୍ଜିତ ହେଲେ ।



## ସଂହର ଡାକ

କୃଷ୍ଣ ନଗରରେ ହଳଧର ସିଂ ନାମକ ଏକ ବଡ଼ ଜମିଦାର ବାସ କରୁଥିଲେ । କୌଣସି ଏକ ଦିନରେ କୌଣସି କଥା ନେଇ ବହୁତ ଲୋକ ବସି କଥାବାର୍ତ୍ତାରେ ରତ ଥା'ନ୍ତି । ତାଙ୍କ ମଧ୍ୟରେ ମଧ୍ୟ ଥା'ନ୍ତି ଉକ୍ତ ଜମିଦାର । ସେହି ସମୟରେ ଗୋପାଳ ଭଣ୍ଡ ସେହି ବାଟଦେଇ ଝୁଲ ଯାଉଥାନ୍ତି । ଗୋପାଳ ଭଣ୍ଡ ତ ବହୁତ ମୌଜିଆ ଲୋକ, ତେଣୁ ଜମିଦାର ତାଙ୍କଠାରୁ ସେହି କଥାଟି ପଦେ ଶୁଣିବାପାଇଁ ଗୋପାଳକୁ ଡାକି ପଚାରିଲେ—କହେ ଗୋପାଳ ! ତୁମେ କୁଆଡ଼େ ଯାଉଛ ? ତୁମେ କ'ଣ ସେହି ଗୋ ଅର୍ଥ ଗୋରୁ, ପାଳ ଅର୍ଥ ଗୋପାଳନକାରୀ, ଅର୍ଥାତ୍ ଗଉଡ଼ ? ଏପରି ନାମକରଣ କିଏ କଲା କହିଲ ? .

ହଳଧର ବାବୁଙ୍କ କଥାଶୁଣି ଗୋପାଳ ସଙ୍ଗେ ସଙ୍ଗେ ମୂର୍ଚ୍ଛା ଗଲା । ତା'ର ମୂର୍ଚ୍ଛା ଯିବା ଦେଖି ହଳଧର ବାବୁଙ୍କ ସମେତ ଅନ୍ୟ କେତେକ ଲୋକ ଦୌଡ଼ିଯାଇ ଜମିଦାରଙ୍କ ବୈଠକଖାନାକୁ ଟେକି କରି ନେଇଗଲେ । କେତେବେଳେ କିଏ ତାହାର କାନ ଫୁଙ୍କିଲାତ କିଏ ବିଞ୍ଚଣାରେ ବିଞ୍ଚିଲା ବା କିଏ ଗୋଡ଼ ଆଉଁଷିଲା ।

ଏପରି ଘଟଣା ଦେଖି ଲୋକମାନେ ଖୁବ୍ ଆଶ୍ଚର୍ଯ୍ୟ ହୋଇଗଲେ । କିଛି ସମୟ ପରେ ଗୋପାଳ ମୁଣ୍ଡ ଟେକି ମିଟି ମିଟି କରି ସ୍ୱଳ୍ପ ଆଖି, ହାତ, ଗୋଡ଼ ପ୍ରଭୃତିକୁ ଖାଲି ଊଣ୍ଡାଳିବାକୁ ଲାଗିଲା । ଏପରି ଭାବଭଙ୍ଗୀ ଦେଖି ଜମିଦାର ପଚାରିଲେ—କହେ। ଗୋପାଳ ! ତୁମର କ'ଣ ଆଗରୁ ବାତ ରୋଗ ଅଛି କି ? ଗୋପାଳ କହିଲା— ଆପଣମାନଙ୍କ ଆଶୀର୍ବାଦରୁ ମୋତେ କୌଣସି ବେମାର ହୁଏନ ।

ଜମିଦାର ପଚାରିଲେ—ତା' ହେଲେ ଏପରି ତୁମେ ହେଲ କାହିଁକି ? ଗୋପାଳ କହିଲା— ଆଜ୍ଞା ! ମୁଁ ଲୋକଙ୍କ ମୁହଁରୁ ଶୁଣିଥିଲି ଯେ, ସିଂହର ଡାକରେ ପୁରୁଷ ପୁଅର ପୌରୁଷଭି ବ ଖସିପଡ଼େ । ସେଥିପାଇଁ ମୁଁ ଯେତେବେଳେ ବାଟରେ ଯାଉଥିଲି, ଆପଣ ମୋ ନାମଧରି ଡାକିବାରୁ ମୁଁ ଆପଣଙ୍କର ସିଂହ ଉପାଧିକୁ ସ୍ମରଣ କରି ମୁର୍ଚ୍ଛା ଗଲି । ତା'ପରେ ଭାବିଲି ମୋର କିଛି ଖସିପଡ଼ିଲା କି ; କିନ୍ତୁ ଦେଖେ ତ କିଛି ଖସି ନାହିଁ । ଯେ ଯେଉଁଠି ରହିବାର କଥା ସେ ସେଇଠି ଅଛି ।

ଏ କଥା ଶୁଣି ସମସ୍ତଙ୍କର ମୁହଁରେ ହସ ଦେଖାଗଲା । ଜମିଦାର ବାବୁ ତା'ର କଥାରେ ସନ୍ତୁଷ୍ଟ ହୋଇ ତାକୁ ଦଶଟଙ୍କିଆ ନୋଟ ଦେଇ ବିଦା କରି ଦେଲେ । ତା'ପରେ ବିଦାୟ ନେଇ ଯାଇ ଯାଉ କିଛିତ ବିଳମ୍ବରେ ରାଜସଭାରେ ପହଞ୍ଚିଲେ । ରାଜା ଏହାର କାରଣ ପଚାରିବାରୁ ଗୋପାଳ ସମସ୍ତ ବିବରଣୀ ଜଣାଇ ଦେଲେ ; ତେଣୁ ସମସ୍ତ ରାଜ କର୍ମଚାରୀ ଠୋ ଠୋ କରି ହସି ଉଠି ସଭା ଭଙ୍ଗ କଲେ ।

## ଗୋପାଳ ଗଧ

ଦିନେ ରାଜା କୃଷ୍ଣଚନ୍ଦ୍ର କୌଣସି କଥାବାର୍ତ୍ତା ହେଉ ହେଉ ଗୋପାଳକୁ କହିଲେ—ତୁମେ ଗୋଟିଏ ଗଧ । ଗଧ ଆଉ ତୁମ ଭିତରେ କୌଣସି ପ୍ରଭେଦ ନାହିଁ; କାରଣ ତୁମର କାର୍ଯ୍ୟକଳାପ ଯାହା, ଗଧର ମଧ୍ୟ ତାହା । ଏହାଶୁଣି ଗୋପାଳ ବସିଥିବା ସ୍ଥାନରୁ ଉଠିପଡ଼ି କହି ଉଠିଲେ—ଆଜ୍ଞା ! କ୍ଷମା କରିବେ । ମୋ ବସିଥିବା ସ୍ଥାନଠାରୁ ଆପଣଙ୍କ ବସିବା ସ୍ଥାନ ଖୁବ୍ କମ୍ ବାଟ, ଅର୍ଥାତ୍ ଫୁଟେ ଦ'ଫୁଟ ହେବ । ଗଧ ପାଖରେ ତ କେବେ ଅନ୍ୟ କେହି ବସିବେ ନାହିଁ; ତେଣୁ ମୁଁ ଗଧ ହେଲେ ଆପଣ ମଧ୍ୟ ସେହି ଜାତିସ୍ଥ, ଅର୍ଥାତ୍ ଗଧ । ରାଜା ଲଜରେ ମୁହଁ ପୋତି ଦେଲେ ।



## କୃପଣ ପିଉସୀ

ମହାରାଜ କୃଷ୍ଣଚନ୍ଦ୍ର ତ ଜାତିରେ ହିନ୍ଦୁ । ତାଙ୍କର ଗୋଟିଏ ବୁଢ଼ୀ ବିଧବା ଭଉଣୀ ଥିଲେ । ହିନ୍ଦୁ ମତରେ ସେ ଥିଲେ ଏକ ନିଷ୍ଠାପର ବିଧବା; ତେଣୁ ପ୍ରତିଦିନ ସେ ହବିଷ୍ୟାଳି, ଧଳାବସ୍ତ୍ର ପରିଧାନ, ଗାଧୋଇ ଆସି ମୁଣ୍ଡରେ ତିଳକ ଘେନ ମାଳା ବହେ ନ ଗଡ଼ାଇଲେ ଆହାର ଘେନନ୍ତି ନାହିଁ । ଏ ସବୁ ଭଲଗୁଣ ଥିବା ସତ୍ତ୍ୱେ ଗୋଟିଏ ଖରାପ ଗୁଣ ଥିଲା । ସେ ଏପରି କୃପଣ ଥିଲେ ଯେ କଥାରେ କହନ୍ତି ଯେପରି ମଳ ଟିକିଏ ବି କାହାରିକୁ ଦେଉ ନ ଥିଲେ; କିନ୍ତୁ ସେ ରାଜାଙ୍କର ଭଉଣୀ ।

ଏପରି କି ସେ ଧର୍ମ ଦେଖାଇ ଯେଉଁ ଠାକୁର ପୂଜା କରନ୍ତି ତାଙ୍କୁ ଟିକିଏ ଭୋଗ ଦିଅନ୍ତି ନାହିଁ । ସବୁବେଳେ ଜଳ ତୁଳସୀ ଭୋଗ ଦିଅନ୍ତି ।

କୌଣସି କଥା ପଡ଼ୁ ପଡ଼ୁ ଦିନେ ହସ କୌତୁକରେ ରାଜା କହିଲେ, ଆରେ ଗୋପାଳ ! ତୁ ତ ମୋତେ ଏପରି କଥା କହି କେତେ ଟଙ୍କା ନେଉ ; କିନ୍ତୁ ଦିନେହେଲେ ତ ମୋର ପିଉସୀଙ୍କ ପାଖରୁ କିଛି ଆଣି ପାରୁନୁ । ଖାଲି ଏଇଥିରେ ମୁହିଁ ଦେଖିବା ତୁମ ଚତୁରତାର ପରିଚୟ କେତେ ?

ଏହା ଶୁଣି ଗୋପାଳ କହିଲା—ଏଇ ସିନା କଥା । ଏଇ କଥାଟା ମୋ ପକ୍ଷେ ଅସମ୍ଭବ ହେବ ? ଆଚ୍ଛା ଆପଣ ମୋତେ ଦୁଇଦିନ ସମୟ ଦିଅନ୍ତୁ, ଦେଖିବା ସେ କେତେ କୃପଣ । ଏହା ଶୁଣି ରାଜା କହିଲେ, ଗୋପାଳ ! ଯାଅ ତ ଦେଖ କିପରି ଟଙ୍କା ନେଇ ଆସିବ ?

କିଛି ସମୟ ପରେ ଗୋପାଳ ପିଉସୀ ମା ଘରଆଡ଼େ ଗଲା ; ପିଉସୀ ମା, ପିଉସୀ ମା ଡାକି ଡାକି ଘର ଭିତରକୁ ଗଲା । ପିଉସୀ ମା' ଘରୁ ବାହାରି ଆସି କହିଲେ, କିରେ ଗୋପାଳ ! କୁଆଡ଼େ ଆସିଲୁ ? ଗୋପାଳ ଲମ୍ବ ଦଣ୍ଡବତଟିଏ ପକାଇ କହିଲା—ନାଇଁ ପିଉସୀ ମା' ତୁମକୁ ଅନେକ ଦିନରୁ ଦେଖିବି ଦେଖିବି ହେଉଥିଲି । ମୋର ତ ବାରଆଡ଼େ ବାରି କାମ; ତେଣୁ ଆସିପାରେନା; କିନ୍ତୁ ଆଜି ମୋର ମନଟାକୁ ଅଟକାଇ ପାରିଲିନି ; ତେଣୁ ଆଜି ସିଧା ଏଠାକୁ ଚାଲିଆସିଲି । ଆଚ୍ଛା ପିଉସୀ ମା ! ଆପଣଙ୍କର ଦେହ ପା' ଭଲ ତ ?

ପିଉସୀ ଟିକଏ ମନଦୁଃଖ କରି କହିଲେ, ହଁରେ ବାବା ଆଉସବୁ କ'ଣ ପଚାରୁଛୁ ? ଆଚ୍ଛା ତୋର ସବୁ ଭଲ ତ ?

ହଁ ପିଉସୀ, ତମ ଆଶୀର୍ବାଦରୁ ସମସ୍ତ ଭଲ । ମୁଁ ତମପାଇଁ ରାଜାଙ୍କୁ ଲଗାଇଛି ଗୋଟିଏ ମନ୍ଦିର ତୋଳିବା ପାଇଁ । ଗୋପାଳର କଥା ଶୁଣି ପିଉସୀ ଟିକଏ ହସିଦେଇ କହିଲେ—ସତେନା ବାପା ସେତିକି ବନ୍ଦୋବସ୍ତ କରିଦେଲେ ତୋର ବହୁତ ଆୟୁଷ ହେବ ।

ଏହିପରି ଗୋପାଳ ଓ ପିଉସୀଙ୍କର ନାନା କଥାବାର୍ତ୍ତା ଚାଲୁ ଚାଲୁ ଗୋପାଳ ଛଳନାରେ କହିଲା—ପିଉସୀ ମା ! ଅନେକ ଦିନରୁ ଭାବୁଛି ତୁମ ଘରୁ ଟିକଏ ପ୍ରସାଦ ପାଇବା ପାଇଁ । ପିଉସୀ ମା କହିଲା, ଏହି ସାମାନ୍ୟ କଥା । ଆଚ୍ଛା ଗୋପାଳ ! ତୁ ଆଜ ଯା କାଲି ଆସି ଖାଇଯିବୁ । ଗୋପାଳ ଏ କଥା ଶୁଣି ଚାଲିଗଲା । ତା ପରଦିନ ଗୋପାଳ ବଙ୍ଗୁଡ଼ଭଜା ନେଇ ଖାଇବାକୁ ଆସିଲା । ପିଉସୀ ଗୋପାଳକୁ ଦେଖି ଭାତ, ଡାଲି ଲାଉ ତରକାରି ବାଢ଼ି ଦେଲା । ଗୋପାଳ ଲୁଚାଇ ଲୁଚାଇ ସେ ବଙ୍ଗୁଡ଼ିକୁ ମିଶାଇ ଖାଉଥିବା ସମୟରେ ପିଉସୀ କହିଲା, ଆରେ ଗୋପାଳ ତୋର ଆଉ କ'ଣ ଲାଗିବ ? ଗୋପାଳ କହିଲା ନାହିଁ । ପିଉସୀ ମା' ମୋର ଆଉ କିଛି ଦରକାର ନାହିଁ । କେବଳ ସେହି ଲାଉ ବଙ୍ଗୁଡ଼ି, ତରକାରିରୁ ଟିକଏ ହେଲେ ସବୁ ହୋଇଯିବ । ସେହି ଲାଉ ବଙ୍ଗୁଡ଼ି ଯାହା ଲାଗୁଛି ନା, ତାକୁ ଟିକେ ଖାଇବାରୁ ଆଉ ମନ ଛାଡ଼ୁନାହିଁ । ଏହି କଥା କ'ଣ ରାଜାଙ୍କୁ ନ କହିବି ; କାରଣ ଏ ଯେଉଁ ବ୍ରାହ୍ମଣୀ ନା ଖାଇ......

ଗୋପାଳର କଥା ଶୁଣି ପିଉସୀ କହିଲେ—ଆରେ ଚୁପ୍ ! ମୁଁ ବିଧବା । ନିରାମିଷ, ହବିଷ୍ୟାନ୍ନ ଖାଇ ଜୀବନ କଟାଉଛି । ମାଛ

କେଉଁଠୁ ଆଣିବ ଯେ ମୁଁ ଖାଇବ ? ଏକଥା ଶୁଣି ଗୋପାଳ ଚଡ଼ା ଗଳାରେ କହିଲେ, ପିଉସୀ ମା ! ତମେ ମାଛ ନ ଖାଉଥିଲେ ଏ ଲାଉ ଡଙ୍କୁ ତରକାରି କିଏ ଏତେ ସୁଆଦିଆ କରି ରାନ୍ଧିବ ? ମୁଁ କଣ ମିଛ କହୁଛି ? ପିଉସୀ ତା ପାଖକୁ ଲାଗିଯାଇ କହିଲେ—ଘାଟି କରନା ଗୋପାଳ ! କାହିଁ ମାଛ ଦେଖାଇଲୁ ?

ଗୋପାଳ ତରକାରି ମଧ୍ୟରୁ ଡଙ୍କୁ ଦୁଇ ଖଣ୍ଡୋଟି ବାହାର କରି କହିଲେ ଦେଖନ୍ତୁ, ମୁଁ ଖାଇ ନିନ୍ଦା କରେନାହିଁ । ଯାହାର ଖାଏ ତାହାର ଗାଏ । ରାଜା ଏହା ଦେଖି କଣ କହିବେ ? ପିଉସୀ ମା ଏ ଲଜ୍ଜା ଓ ଅପମାନର କଥା ଦେଖି ଗୋପାଳକୁ କହିଲେ, ମୋ ବାପାଟା ପରା ତୋ ଓଠ ଧରି କହୁଛି ଏକଥା ଆଉ କାହାରିକୁ କହିବୁ ନାହିଁ । ମୁଁ ପରା ତୋର ମାଆ ପରି । ଏଇ ଟଙ୍କା ଦେଇଟା ଦେଉଛି ନେଇ ଯା ଘର ଖର୍ଚ୍ଚ କରିବୁ ; କିନ୍ତୁ କଥାଟା-ଯେପରି କାହାରିକୁ ନକହୁ ।

ଗୋପାଳ ତା ପରେ ଟଙ୍କା କେତେଟା ଧରିଆଣି ରାଜାଙ୍କୁ ଦେଖାଇଲେ । ରାଜାଙ୍କୁ ସମସ୍ତ କଥା କହିବାରୁ ରାଜା ଖୁସିହୋଇ ଆଉ କିଛି ଟଙ୍କା ଦେଇ ତାକୁ ବିଦା କରିଦେଲେ ।



## ଦୁଇଟି ଡାଳମ୍ବ କଥା

କୃଷ୍ଣଚନ୍ଦ୍ର ମହାରାଜ ଗୋପାଳ ଭଣ୍ଡର କଥାରେ ସନ୍ତୁଷ୍ଟ । ହେଲେ ତାର ପରିବାର ଅର୍ଥାତ୍ ସ୍ତ୍ରୀ ପୁଅ ବୋହୂଙ୍କୁ ଜାଣିବା ପାଇଁ

ମନ ବଳାଇଲେ । ପ୍ରଥମେ ତାର ବୋହୂକୁ ପରୀକ୍ଷା କରିବା ପାଇଁ ଗୋଟିଏ ଲୋକର ହାତରେ ତାଳମ୍ବ ମଗାଇ ପଠାଇଲେ ।

ଗୋପାଳ ଭଣ୍ଡର ବୋହୂଟି ମହାନ୍ ଲୋଭୀ; ତେଣୁ ସେ ରାଜାଙ୍କର ରହସ୍ୟ ବୁଝିପାରି ଲୋକର ହାତରେ ଦୁଇଟି ତାଳମ୍ବ ଦେଇ କହିଲା; ରାଜାଙ୍କୁ କହିବୁ ଗୋଟିଏ ଖାଇବେ ଏବଂ ଅନ୍ୟଟିକୁ ଅନ୍ୟ ହାତରେ ଧରିଦେବେ ।

ରାଜା ଲୋକଠାରୁ ଏହିସବୁ ସମ୍ବାଦ ପାଇ ବୁଝିପାରିଲେ ଯେ ମା' ପୁଅର ସମ୍ପର୍କ କଥା; ତେଣୁ ସେ ମନେ ମନେ ଲଜ୍ଜିତ ହେଲେ । ଗୋପାଳ ଭଣ୍ଡ ବୋହୂର ଚତୁରତା ଦେଖି ଗୋଟିଏ ପାଟଶାଢ଼ୀ ଉପହାର ଦେଲେ ।

—*—

## ରାଜା ଓ ଭଣ୍ଡଙ୍କ ସ୍ତ୍ରୀ

କୃଷ୍ଣନଗରର ରାଜା କୃଷ୍ଣଚନ୍ଦ୍ର ଗୋପାଳଙ୍କୁ ତ ସବୁଦିନେ ପରୀକ୍ଷା କରନ୍ତି । ତାର ପରିବାର ବର୍ଗଙ୍କୁ ପରୀକ୍ଷା କରିବା ପାଇଁ ପ୍ରଥମେ ତାର ପୁତ୍ରବଧୂକୁ ପରୀକ୍ଷା କରି ତାର ଉପଯୁକ୍ତ ଜ୍ଞାନର ନିଦର୍ଶନ ପାଇ ପାରିଲେ । ତାପରେ ତା'ର ସ୍ତ୍ରୀକୁ ପରୀକ୍ଷା କରିବା ପାଇଁ ମନେ ମନେ ଚିନ୍ତା କଲେ; ତେଣୁ ତାଙ୍କ ଦାସୀ ଚମ୍ପକକୁ ଡାକି କହିଲେ—ଯାଅ, ଗୋପାଳର ସ୍ତ୍ରୀ ଠାରୁ କିଛି ମଧୁ ନେଇଆ । ଚମ୍ପକ ପ୍ରତିବାଦ କରି କହିଲା—ମହାରାଜ ! ଆପଣଙ୍କର କ'ଣ ମଧୁ ନାହିଁକି ? ରାଜା କହିଲେ, ଆମର ମଧୁ ଅଛି ଯେ; କିନ୍ତୁ ଗୋପଳର

ମଧୁ, ଆମ ମଧୁଠାରୁ ଉଇଁଚ; ତେଣୁ ତୁ ଯା ଶୀଘ୍ର ମଧୁ ନେଇଆ ।

ଚମ୍ପକ ଦେଖିବାକୁ କୁତ୍ସିତା । ତାର ରୂପ କଳା ଓ କମୁଚ-କମାକାର । ଚମ୍ପକକୁ ଗୋପାଳର ସ୍ତ୍ରୀ ଦେଖି କହିଲେ—କଲେ ଚମ୍ପକ, କୁଆଡ଼େ ? ତୋର ରୂପ ତ ଜହ୍ନି ମଞ୍ଜିଠାରୁ ଟିକଏ ଗୋରା । ତୋର ରୂପ ଦେଖିଲେ ଗର୍ଭିଣୀ ମାଇକିନିଆର ହୁଅ ଗର୍ଭପଡ଼ିବ । ହେଉ, ତୁ କୁଆଡ଼େ ଆସିଛୁ କହିଲୁ ? ଚମ୍ପକ କହିଲା, ତୁମର ଦୋଷ ନାହିଁ । ଯୋଗିନିଖିଆ ଭଗବାନ ମୋତେ ଏପରି ରୂପ ଦେଇ ତ ଗଢ଼ିଛି, ତୁମେ ବା କାହିଁକି ନ ବାଦୁନିବ ? ହେଉ ଯାହା ହେଉନା କାହିଁକି, ରାଜା ପଠାଇଛନ୍ତି ମଧୁ ନେବାପାଇଁ ।

ଏକଥା ଶୁଣି ଭଣ୍ଡାର ସ୍ତ୍ରୀ ରାଜାଙ୍କର ମନ କଥା ସମସ୍ତ ଜାଣିପାରିଲେ; ତେଣୁ ସେହି ସଙ୍ଗେ ସଙ୍ଗେ କାଗଜ କଲମ ଧରି ଖଣ୍ଡିଏ ପତ୍ରଲେଖି ଚମ୍ପକ ହାତରେ ଦେଇ କହିଲେ—ଚମ୍ପକ ! ଏହି ପତ୍ରରେ ମଧୁ ଅଛି । ତୁ ନେଇଯା ରାଜାଙ୍କୁ ଦେବୁ । ଚମ୍ପକ ମନେ ମନେ ରାଗିଯାଇ ରାଜାଙ୍କୁ ପତ୍ର ଖଣ୍ଡିକ ଦେଇ କହିଲା—ଏହି ମଧୁ ନିଅ । ରାଜା ପତ୍ର ଖଣ୍ଡିକ ପଢ଼ିଲେ, ଲେଖାଥିଲା—

କୃଷ୍ଣ କୃଷ୍ଣ ସ୍ୱୟଂ କୃଷ୍ଣ ଅଦୃଷ୍ଟ ମୋହର,
ଅକୃଷ୍ଣଙ୍କୁ ନଷ୍ଟକରି ଶୁଣ ସମାଚାର ।

ମମ ବନ୍ଧୁ ସବୁ ମଧୁ କରିଛନ୍ତି ଶେଷ,
ଶୂନ୍ୟଭଣ୍ଡ ପଡ଼ିଅଛି ନାହିଁ ମଧୁଲେଶ ।

ଭଣ୍ଡ ଧୋଇ ଖାଇବାକୁ ଥାଏ ଯେବେ ଆଶା,
ଚହିଁରେ ମେଣ୍ଟିବ ଯେବେ ତୁମ୍ଭଙ୍କ ପିପାସା ।

ବସ୍ତୁରି ପଦ ଲେଖିଲେ ଦେବ ଦଣ୍ଡଧାର୍ଯ୍ୟ,
ଦୋଷଥିଲେ କ୍ଷମାଦେବ ଏତକ ଗୁହାରି ।
ଚରଣେ ଏ ନିବେଦନ ଆହେ ନରପତି
ଉଚ୍ଛିଷ୍ଟ ଆହାର କେବେ କରଇ କି ସିଂହ । ଇତି ।

ଚରଣାଶ୍ରିତା
ଭାଣ୍ଡର ସ୍ତ୍ରୀ

ପଦଟି ପଢ଼ିସାରି ରାଜା ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ତାଙ୍କ ହାତରେ ପୁଣି ଦଶଟଙ୍କିଆ ନୋଟ ବଢ଼ାଇ ଦେଇ କହିଲେ, ଏ ଟଙ୍କା ନେଇଯା ଭାଣ୍ଡର ସ୍ତ୍ରୀକୁ ଦେଇଆସିବ । ତାଙ୍କ ମୁହଁମୋଡ଼ି ନେଇ କାଟରେ ଭାବିଲେ ଯେ, ସେତିକି ପଦ ଖଣ୍ଡିକରେ ଘର ମାଇକିନିଆଟିଏ କ ମଧ୍ୟ ଚଟାଇଲା ଯେ, ସଙ୍ଗେ ସଙ୍ଗେ ରାଜା ସନ୍ତୁଷ୍ଟ ହୋଇ ଦଶଟଙ୍କିଆ ନୋଟ ଖଣ୍ଡିଏ ବଢ଼ାଇଦେଲେ । ଏସବୁ କଥା ଭାବି ଯାଉଁ ଯାଉଁ ତାଙ୍କ ଭାଣ୍ଡର ସ୍ତ୍ରୀ ପାଖରେ ପହଞ୍ଚି ଯାଇଥିଲା । ମୁହଁ ମୋଡ଼ି ତାଙ୍କ ଟଙ୍କାଟିକୁ ବଢ଼ାଇ ଦେଇ କହିଲା, ନିଅ ! ତୁମ ମଧୁର ଉପହାର ।

—❧—

## ନବାବଙ୍କ ମହାଭାରତ

ହିନ୍ଦୁ ଧର୍ମର ମହାଭାରତ ଯେତେବେଳେ ବହୁତ ସୁନାମ ଅର୍ଜନ କରିଥାଏ, ଯେତେବେଳେ ମୁର୍ଶିଦାବାଦରେ ନବାବ ସିରାଜଦୌଲା ରାଜୁତି କରିଥିଲେ । ସେ ରାଜା କୃଷ୍ଣଚନ୍ଦ୍ରଙ୍କୁ ଲେଖି ପଠାଇଲେ ଯେ ଯେତେ ଶୀଘ୍ର ପାରୁ ତୁମ ହିନ୍ଦୁଙ୍କର

ମହାଭାରତ ଭଳି ଆମର ଗୋଟିଏ ମହାଭାରତ ଲେଖିଦଅ । ଯଦି ଲେଖିକରି ନଦଅ, ତାହେଲେ ତୁମର ବହୁତ ଅମଙ୍ଗଳ ଘଟିବ । ଏହି କଥା ଚଢ଼ି ରାଜା କୃଷ୍ଣଚନ୍ଦ୍ର ଅତ୍ୟନ୍ତ ହତାଶ ମଧ୍ୟରେ ବୁଡ଼ି ରହିଲେ । କଣ କରିବେ, କପରି କରିବେ । ଏହିସବୁ କଥା ଭାବି ଭାବି ରାଜାଙ୍କ ମୁଣ୍ଡରେ ଆଉ ବୁଦ୍ଧି ପଶିଲା ନାହିଁ । ଏହି ସମୟରେ ଗୋପାଳ ଭଣ୍ଡ ଆସି ପହଞ୍ଚି ଦେଖେ ତ ରାଜାଙ୍କର ଏପରି ଅବସ୍ଥା ; ତେଣୁ ଗୋପାଳ କହିଲା, ମହାରାଜ ! ଆପଣଙ୍କର ଚିନ୍ତିତ ଅବସ୍ଥାର କାରଣ କଣ ?

ଗୋପାଳର କଥା ଶୁଣି ରାଜା କିଛି କହିପାରୁ ନଥାନ୍ତି, କିନ୍ତୁ ଗୋପାଳ ତ ଏହିପରି କେତେ ଦୁର୍ଘଟଣାରୁ ଉଦ୍ଧାର କରିଆଇଛି, ତେଣୁ ସେ ବାଧ୍ୟ ହୋଇ କହିଲେ, କହିବି ଗୋପାଳ, ହେଉ ଶୁଣ । ଆଜି ନବାବସାହେବ ମୋ ପାଖକୁ ଲେଖିଛନ୍ତି ଯେ ଆମର ହିନ୍ଦୁମାନଙ୍କର ଯେପରି ମହାଭାରତ ଅଛି ଠିକ୍ ସେହିପରି ତାଙ୍କ ନାମରେ ମହାଭାରତ ଲେଖି ନ ଦେଲେ ବହୁତ ଅମଙ୍ଗଳ ହେବ; ତେଣୁ ଆମ ପଣ୍ଡିତମାନଙ୍କୁ ମୁଁ ବହୁତ କହିଲି; କିନ୍ତୁ ସେ କହିପାରିଲେ ନାହିଁ; ତେଣୁ ତାହାହିଁ ମୋର ଚିନ୍ତାର ବିଷୟ । କ'ଣ କରିବି କିଏ ବା ତା ନାମରେ ମହାଭାରତ ଲେଖିବ ? ଗୋପାଳ ଏହିସବୁ କଥା ଶୁଣିସାରି କହିଲା, ଏଇ ଛୋଟକଥା ପାଇଁ ଆପଣ ଚିନ୍ତିତ ? ମୁଁ କ'ଣ ଏଡ଼େ ମୂର୍ଖ ଯେ ମହାଭାରତ ଲେଖି ପାରିବି ନାହିଁ ? ଆଜିଠାରୁ ମହାଭାରତ ଲେଖିବାର ଦାୟିତ୍ୱ ମୋ ଉପରେ ଦେଇ ନିଶ୍ଚିନ୍ତରେ ରହନ୍ତୁ; କିନ୍ତୁ ମହାଭାରତ ଲେଖିବା ଆଗରୁ ନବାବଙ୍କ ଠାରୁ ପାଞ୍ଚ ହଜାର ଟଙ୍କା ଆଣି ମୋତେ ଦେଲେ ମୁଁ ଲେଖା ଆରମ୍ଭ କରିବି ।

ଗୋପାଳ ଭଣ୍ଡର କଥା ଶୁଣି ରାଜାଙ୍କର ଟିକିଏ ସାହସ ହେଲା । ସେ ସଙ୍ଗେ ସଙ୍ଗେ ନବାବଙ୍କ ପାଖକୁ ପାଞ୍ଚହଜାର ଟଙ୍କାପାଇଁ ଗୋଟିଏ ଦୂତ ପଠାଇ ଦେଲେ । ନବାବଙ୍କଠାରୁ ସଙ୍ଗେ ସଙ୍ଗେ ଟଙ୍କା ଆଣି ଗୋପାଳକୁ ଦିଆଗଲା । ଗୋପାଳ ଟଙ୍କାନେଇ ଆଜ୍ଞା କହି ଚାଲିଗଲା । କିଛିଦିନ ଗଲା ଉତ୍ତାରୁ ଗୋପାଳକୁ ଡାକି ରାଜା ପଚାରିଲେ ଗୋପାଳ ! ମହାଭାରତ ଲେଖା କେତେଦୂର ଗଲା । ଗୋପାଳ କହିଲା, ଆଜ୍ଞା ମହାଭାରତ ତ ଏତେ ସୋଜା ନୁହେଁ, ତଥାପି ମୋ ପ୍ରାଣପଣେ ଅର୍ଦ୍ଧାଧିକ ସାରିଲିଣି; କିନ୍ତୁ ଅବଶିଷ୍ଟ ଅଂଶକୁ ଆଉ ହଜାର ଟଙ୍କା ନହେଲେ କିଛି ଶେଷ ହେବ ନାହିଁ । ରାଜା ଗୋପାଳର କଥା ଶୁଣି ପୁଣି ହଜାରେ ଟଙ୍କା ମଗାଇ ପଠାଇଲେ । ସଙ୍ଗେ ସଙ୍ଗେ ନବାବଙ୍କଠାରୁ ଟଙ୍କା ଆଣି ଗୋପାଳକୁ ଦେଇଦେଲେ ।

ବହୁତ ଦିନ ବିତିଗଲା । କୌଣସି ଏକ ଦିନରେ ଗୋପାଳ ଭଣ୍ଡ ଗୋଟିଏ ଗୋଟିଏ କରି ତା'ର ମୁଣ୍ଡରେ ବହୁତ ଛିଣ୍ଡା କାଗଜ ଗଣ୍ଠିଲି କରି ନବାବଙ୍କ ଦରବାରରେ ପ୍ରବେଶ ହେଲା । ନବାବ ଏପରି ଅବସ୍ଥା ଦେଖି ପଚାରିଲେ ଆପଣ କିଏ ? କେଉଁଠି ଆସିଲେ ଏବଂ କାହିଁକି ଆସିଲେ ? ଗୋପାଳ କହିଲା—ଜାହାଁପନା ! ମୁଁ ଆପଣଙ୍କ ମହାଭାରତ ନେଇକରି ଆସିଛି; କିନ୍ତୁ କ୍ଷମା କରିବେ ଆପଣଙ୍କର ମହାଭାରତ ଗୋଟିଏ କାରଣ ପାଇଁ ଶେଷ ହୋଇ ପାରିନାହିଁ । ନବାବ ବହୁତ ଜାଣିବା ପାଇଁ ଇଚ୍ଛାକରି କହିଲେ— କୁହ ଆପଣଙ୍କର କାରଣ କ'ଣ ଏବଂ କାହିଁକି ବନ୍ଦ ହୋଇଛି ? ଗୋପାଳ କହିଲା—ଜାହାଁପନା ! ଆମର ହିନ୍ଦୁ ମହାଭାରତରେ ଯେପରି ଦ୍ରୌପଦୀ ହେଉଛନ୍ତି ନାୟିକା, ସେହିପରି ଆପଣଙ୍କର କିଏ ହେବ ? ସେହି ଦ୍ରୌପଦୀଙ୍କର ଯେପରି ପାଞ୍ଚୋଟି ନାୟକ, ଯଥା—

ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ, ଅଛନ୍ତି ଆପଣଙ୍କର ବେଗମ୍ ମନେକରନ୍ତୁ ନାୟିକା । ଆପଣ ଯୁଧିଷ୍ଠିର ଭଳି ଜଣେ ଧର୍ମ ନିରପେକ୍ଷ । ଆପଣଙ୍କ ବେଗମ୍‌ଙ୍କର ଆଉ କେତେଜଣ ନାୟକ କଏ ? ସେମାନଙ୍କର ନାମ କହିଲେ ମୁଁ ଏଣିକିଠାରେ ରହି ଆପଣଙ୍କର ମହାଭାରତ ରଚନା କରି ଦେଉଛି ।

ଏକଥା ନବାବ ଶୁଣିବାମାତ୍ରକେ ଛୋବା ଛୋବା କହି ଉଠି ପଳାଇଲେ ଏବଂ କାନରେ ହାତ ଦେଇ କହିଲେ; ମୋର ଆଉ ମହାଭାରତ ଦରକାର ନାହିଁ । ସେ ହରକ୍ ହୋଇ ଆଉଦୁଇହଜାର ଟଙ୍କା ଦେଇ କହିଲ—ଫେରିଯାଆ । ଗୋପଳ କହିଲ, ଆଜ୍ଞା ! ମୁଁ ଏତେଦିନ କଷ୍ଟକରି ମହାଭାରତ ରଚନା କରିଥିଲି ? ଶେଷରେ କ'ଣ ଗରିବ ପ୍ରତି ଏଇ ବିଚାର ହେଲ; କିନ୍ତୁ ମୁଁ ଫେରିଯାଉଛି । ନବାବ ଆଉ ହଜାରଟଙ୍କା ଦେଇ କହିଲେ – ମୁଁ କିଛି ଶୁଣିବାକୁ ଚାହେଁନା । ଶୀଘ୍ର ମୋ ଆଗରୁ ଦୂର ହୋଇଯା । ଗୋପାଳ ଟଙ୍କା ନେଇ ହସି ହସି ଘରକୁ ଫେରିଲ ।

—※—

## ଗୋପାଳର ବୈଠକଖାନା

ଗୋପାଳ ଭଣ୍ଡ ଜଣେ ରଜାଙ୍କର ଭଣ୍ଡ ହେଲେ ମଧ୍ୟ ସେ ଖୁବ୍ ଗରିବ; ତେଣୁ ରଜା ବେଶଭୂଷା ମଧ୍ୟରୁ ସେ ବଞ୍ଚିତ । ତା'ର ଗୋଟିଏ ଭଙ୍ଗା ଚାଳଘର ଥିଲ । ଦିନେ ବର୍ଷାହେବାରୁ ଅଗଣାରେ ପାଣି ଜମିଯାଇ ପିଣ୍ଡାଗୁଡ଼ିକ କାଦୁଅ ହୋଇ ଯାଇଥିଲ । ସେତିକବେଳେ ଗୋପାଳ ଗୋଟିଏ ଘରୁ ଅନ୍ୟ ଘରକୁ ଗଲବେଳେ

କାଦୁଅରେ ଗୋଡ଼ ଖସିଯିବାରୁ ତଳେ ପଡ଼ି କାଦୁଅ ହୋଇଗଲା । ସେତେବେଳକୁ ତା'ର ସ୍ତ୍ରୀ ଘର ରାନ୍ଧୁଥାଏ । ଗୋପାଳର ପଡ଼ିବା ଶବ୍ଦ ଶୁଣି ଦୌଡ଼ି ଆସି ଦେଖେ ତ ତା'ର ସ୍ୱାମୀର ଏହି ଅବସ୍ଥା; ତେଣୁ ହସି ହସି କହିଲା, ବେଶ୍ ହୋଇଛି, ଖୁବ୍ ହୋଇଛି, ଭଲ ହୋଇଛି ଏଥର ମୋ ମନକୁ ଆସିଛି । ଯେମିତିକା ଲୋକକୁ ସେମିତିକା ଶାସ୍ତି । ଆହେ ତୁମେତ ସବୁବେଳେ ରାଜାଙ୍କ ପାଖକୁ ଯିବା ଆସିବା କରୁଛ । ରାଜାଙ୍କୁ କହି ଖଣ୍ଡିଏ କୋଠାଘର କରି ପାରିଲ ନାହିଁ ? ତୁମେ ବରଷାରେ ପଡ଼ିବ ନାହିଁ କି'ଣ ସାହିପଡ଼ିଶାର ଲୋକେ ପଡ଼ିବେ ? ଭଗବାନ ଯାହା କରନ୍ତି ମଙ୍ଗଳପାଇଁ ।

ସ୍ତ୍ରୀ କଥା ଶୁଣି ଗୋପାଳ ରାଗିଯାଇ କହିଲା—ବାବାରେ, ପତିଭକ୍ତା ମଙ୍ଗଳମୟୀ ନାରୀ ! ତୁମ ମୁହଁରେ ଏତେ ମଙ୍ଗଳ ବାଣୀ ହୋଇଛି । ମୋତେ ଆଗରୁ କହିଲ ନାହିଁ ? ହେଉ ହେଲା, କାଲିରେ ଦେଖ ! ମୁଁ କି'ଣ କରି ଦେଉଛି । ରାତି ପାହିଲେ ଦୋତାଲାରେ ମୋର ବୈଠକଖାନା ହେବ ।

ତା' ପରଦିନ ସକାଳୁ ଗୋପାଳ ରାଜଦରବାରକୁ ଯାଇ ରାଜା ଓ ତାଙ୍କର କର୍ମଚାରୀମାନଙ୍କୁ ନିମନ୍ତ୍ରଣ କରି କହିଲା—ଆଜ୍ଞା ! କାଲି ଆପଣମାନେ ମୋର ଗରିବ ଘରକୁ କିଛି ଜଳପାନ କରିବାକୁ ଯିବେ । ଗୋପାଳକୁ ତ ରାଜା ଅନେକ ଭଲ ପାଉଥିଲେ ; ତେଣୁ ତା କଥାରେ ରାଜି ହୋଇ ଅନ୍ୟମାନଙ୍କୁ ମଧ୍ୟ ରାଜି କରାଇଲେ । ଗୋପାଳ ଫେରିଆସି ଏକତାଲା ଉଚ୍ଚରେ କିଛିଖଣ୍ଡ ବାଉଁଶ ପୋତି ତା ଉପରେ ଖଣ୍ଡିଏ ଚାଟିଘର ତିଆରି କଲା । ତା ପରଦିନ ରାଜା ଆସିବା ଆଗରୁ ଦୁଆର ମୁହଁରେ ଗୋଟିଏ ଲୋକକୁ ଜଗାଇ ଦେଇ

କହିଲା, ଯେ ଆସି ମୋତେ ଖୋଜିବ, ଖ୍ କହିବୁ ବାବୁ ଦୋଚାଳି ବୈଠକଖାନାରେ ଅଛନ୍ତି ।

ଗୋପାଳ ଏହା କହିଦେଇ ଯାଇ ସେହି ଦୋଚାଳି ଘରେ ବସିଲା । ବେଳହେବାରୁ ରାଜା ଓ କର୍ମଚାରୀ ଆସିବାରୁ ସେ ଲୋକଟିକୁ ପ୍ରଥମେ ଦେଖି ପଚାରିଲେ ଗୋପାଳ କାହିଁ ? ସେ କହିଲା, ବାବୁ ଦୋଚାଳି ବୈଠକଖାନାରେ ଅଛନ୍ତି । କଥା ଶୁଣି ରାଜା ମନେ ମନେ ଭାବିଲେ ଏ ତ ବଡ଼ଳଘର, ଏହାମଧ୍ୟରେ ପୁଣି କୋଠାଘର ଆସିଲା କେଉଁଠୁଁ ? ଏହା ଭାବି ଗୋପାଳକୁ ଡାକ ଡାକ ଘର ଭିତରକୁ ପଶିଲେ । ଗୋପାଳ ମଞ୍ଚା ଉପରେ ଥାଇ ରାଜାଙ୍କୁ କହିଲା ମଣିମା ! ଏହି ପଥ ଦେଇ ଆସନ୍ତୁ । ମୁଁ ଏହି ଦୋଚାଳିରେ ଅଛି । ରାଜା ଅନାଇ ହସି ହସି କହିଲେ—ତୁମର ଏହି କ'ଣ ଦୋଚାଳି ବୈଠକଖାନା ! ଗୋପାଳ କହିଲା, ଆପଣ ସିନା ବଡ଼ଲୋକ ! ଆପଣଙ୍କର ପକ୍କା ଦୋଚାଳି ବୈଠକଖାନା ; କିନ୍ତୁ ଏ ଗରିବର ବାଉଁଶରେ ତିଆରି ବୈଠକଖାନା । ଆପଣ ଶୀଘ୍ର ଆସନ୍ତୁ ।

ଏକଥା ଶୁଣି ରାଜା ସମସ୍ତ କଥା ବୁଝିପାରିଲେ ଏବଂ କହିଲେ—ଗୋପାଳ ! ଆମକୁ ଆଉ ଯିବାକୁ ଦେବନି । ଏବେ ତୁମେ ସେଠାରୁ ଓହ୍ଲାଇ ଆସ । କାଲିଠାରୁ ତୁମର ଦୋଚାଳି ବୈଠକଖାନାର ବ୍ୟବସ୍ଥା କରି ଦିଆଯିବ । ତା' ପରେ ଗୋପାଳ ମଞ୍ଚାରୁ ଓହ୍ଲାଇଆସି ଉପଯୁକ୍ତ ସମ୍ମାନ ଦେଲା । ତା'ପରଦିନ ସକାଳୁ ପକ୍କା ଗୋପାଳ ବୈଠକଖାନା ରାଜା ଆରମ୍ଭ କରିଦେଲେ । ସେ ତା'ର ସ୍ତ୍ରୀର ଓଠକୁ ହଲାଇ ଦେଇ କହିଲା—ଦେଖିଲୁ ସୁନ୍ଦରୀ ! ମୋ ଭଣ୍ଡ ସ୍ୱାମୀର କାରମତି ।



## ଜୋଇଁ ଡାକରା

ମାଇପି ଜାତ ସାଧାରଣତଃ ଝିଅକୁ ଭଲ ପାଆନ୍ତି । ଗୋପାଳଭଣ୍ଡର ଝିଅ ବାହା ହେବା ଦିନଠାରୁ ତା'ର ଜୋଇଁ ଶ୍ୱଶୁର ଘରକୁ ଆସିନାହିଁ ; ତେଣୁ ଏକଦା ଗୋପାଳ ଭଣ୍ଡର ସ୍ତ୍ରୀ ମୁହଁ ଠାକୁ ଉପର୍ଯ୍ୟ କରି କହିଲା—ଶୁଣିଲଟି ! ଅନେକ ଦିନ ହେଲାଣି ତ ମୋ ଜୋଇଁ ଆସିନାହାନ୍ତି । ଏଥିରେ ତାଙ୍କର ମନ କ'ଣ ଦୁଃଖ ହେଉ ନଥିବ । ଶ୍ୱଶୁର ଘରକୁ ଜୋଇଁ ମାସେ ଦୁଇ ମାସରେ ଥରେ ଆସିବା କଥା । ଏକାଥରକେ ସେ ବରଷେ ହେଲା ମୁହଁମାଡ଼ି ପଡ଼ିଛନ୍ତି । ତାଙ୍କୁ ଆଣିଲେ କ'ଣ ତୁମର ସବୁ ସରିଯିବ ? ହଁ, ତୁମେ ଜୋଇଁଙ୍କୁ କାହିଁକି ଆଣିବ ? ରାଜାଙ୍କ ଘରୁ ନିଜ ଘରକୁ ଓ ନିଜ ସମ୍ବନ୍ଧୀଙ୍କ ଘରକୁ ଗଲେ ଲୋକେ ସିନା ଚିହ୍ନିବେ, ଜୋଇଁଙ୍କୁ କାହିଁକି ଆଣିବ ? ଯାହା କରିବା କାହିଁକି ଜ୍ୱାଇଁଙ୍କୁ କାଲି ନଆଣିଲେ ମୁଁ ଏ ଘରେ ରହିବି ନାହିଁ ।

ଗୃହିଣୀର କାଳଭୈରବୀ ମୂର୍ତ୍ତି ଦେଖି ଗୋପାଳ ମନରେ ଭାବିଲା, ଜୋଇଁ ଆସିଲେ କେତେ ଖରଚ ତା ନବୁଝି ମୋ ଉପରେ କ୍ରୋଧ ଦେଖାଉଛି । ମାଇପି ଜାତିକୁ ନ ବୁଝାଇଲେ ଘର ଚଳିବ କିପରି ? ପଇସା କେତେ କଷ୍ଟରେ ଆସୁଛି, କେଉଁଠୁ ଆସୁଛି ତାହା ବୁଝିବା ଦରକାର ହେଉନାହିଁ ; କିନ୍ତୁ ମୁଁ ଜୋଇଁଙ୍କୁ ଆଣି ଶାଶୁକୁ ଏକ ଅକଲ ଶିଖାଇ ଦେବି ଯେ ଆଉ କେବେ ମୋତେ କହିବ ନାହିଁ । ଏହା ଭାବି ସ୍ତ୍ରୀକୁ ସାନ୍ତ୍ୱନା ଦେଇ କହିଲା; ଅଚ୍ଛା ତୁମର କଥା ହେଲା । କାଲି ଯାଇ ମୁଁ ଜୋଇଁଙ୍କୁ ନେଇ କରି ଆସିବି ; କିନ୍ତୁ ତା'ର ଉପଯୁକ୍ତ ଚର୍ଚ୍ଚା କରିବ । ତା'ପରେ ଜୋଇଁ ଆସିଲା ଓ କେତେ ଆମୋଦ ପ୍ରମୋଦରେ ରହିଲା । ଖିଆ

ପୁରି, ମାଛ, ମାଂସ ଓ ନାନା ପ୍ରକାର ପିଠାପଣା ପାଇ ଜୋଇଁ ଘରକୁ ଯିବା ଇଚ୍ଛା କଲେ ନାହିଁ । ଦିନକୁ ଦୁଇଦିନ ହୋଇଗଲା । ତଥାପି ଜୋଇଁ ଗଲେ ନାହିଁ । ଗୋପାଳ ମନେ ମନେ ଭକ୍ତ ବୁଝିଲା ଖେଦାଇବାକୁ ଲାଗିଲା; ତେଣୁ ସେ ଏକ ବୁଦ୍ଧି ପାଞ୍ଚିଲା ।

ଗୋପାଳଙ୍କର ବାଡ଼ପଟେ ବଗିଚାଟିଏ ଥାଏ । ସେହି ବଗିଚାରେ ନାନା ପ୍ରକାର ଫୁଲଫଳ ଅଛି । ସେଥି ମଧ୍ୟରୁ ଗୋଟିଏ ଲେମ୍ବୁ ଗଛରେ ପ୍ରଚୁର ଲେମ୍ବୁ ଥାଏ । ସେଦିନ ଗୋପାଳ ଚତୁରତା କରି ସ୍ତ୍ରୀର ଅଗୋଚରରେ ଜୋଇଁକୁ ଡାକି କହିଲା—ବାବୁ, ଏହି ଲେମ୍ବୁ ଗଛଟିରୁ ପ୍ରତିଦିନ ଲେମ୍ବୁ ଚୋରି ଯାଉଛି । ତୁମେ ଆଜି ଟିକିଏ ସଂଧ୍ୟା ପୂର୍ବରୁ ଜଗିବ, ମୁଁ ଗୋଟିଏ କାମକୁ ଯିବି । ତୁମେ ସେ ଚୋରକୁ ଧରିଲେ ଯାହାହେବ ପରେ ମୁଁ ଜାଣେ ।

ଏ କଥା ଶୁଣି ଜୋଇଁ ସନ୍ଧ୍ୟା ପୂର୍ବରୁ ଯାଇ ଗୋଟିଏ ଗଛ ପଟରେ ଜଗି ରହିଲା । ଏଣେ ଗୋପାଳ ସନ୍ଧ୍ୟାହେବା ଦେଖି ଘର ଭିତରକୁ ଯାଇ ତାର ସ୍ତ୍ରୀକୁ କହିଲା, ମୋତେ ଖାଇବାକୁ ଦିଅ, ମୁଁ ରାଜାଙ୍କ ଘରକୁ ଯିବି; କିନ୍ତୁ ଗଲ, ଗୋଟିଏ ଅଟକା ଲେମ୍ବୁ ନେଇ ଆସିବ । ମୋ ପେଟ ଟିକିଏ ଖରାପ ଅଛି । ଗୋପାଳର ସ୍ତ୍ରୀ ଗୋଟିଏ ଆଲୁଅ ନେଇ ଲେମ୍ବୁ ଆଣିବା ପାଇଁ ବଗିଚା ଭିତରେ ପଶିଗଲା । ଲେମ୍ବୁ ଛିଣ୍ଡାଇବାକୁ ଯାଉ ଯାଉ ଆଲୁଅ ଲିଭିଗଲା । ଆଉ ଘରକୁ ନ ଫେରି ବଗିଚା ଭିତରକୁ ଯାଇ ଲେମ୍ବୁ ଛିଣ୍ଡାଇଲା- ବେଳେ ଜୋଇଁ କୁଣ୍ଢାଇ ମାଡ଼ି ବସିଲା । ତା ପରେ ହାଉଳି ପଡ଼ିଯିବାରୁ ଗୋପାଳ ଗୋଟିଏ ଲଣ୍ଠନ ନେଇ ଶାଶୁ ମୁହଁକୁ ଏବଂ ଜୋଇଁ ମୁହଁକୁ ଦେଖାଇ ଦେଲା । ଶାଶୁ ଓ ଜୋଇଁ ପରସ୍ପର ମୁହଁକୁ ଅନାଇ ଦେଇ ଲଜ୍ଜ୍ୟାରେ ଜଳା ପଡ଼ିଗଲେ । ସେ ଆଉ କେଉଁ

ତାହାକୁ ଅନାଇଲେ ନାହିଁ । ସେତେବେଳକୁ ବହୁତ ରାତି ହୋଇ ଗଲାଣି । ଜୋଇଁ ଲାଜରେ ସେତେ ରାତିରେ ନିଜ ଘରକୁ ପଳାଇ ଗଲେ । ଗୋପାଳ ସ୍ତ୍ରୀକୁ କହିଲା—ଦେଖିଲ ତ ତୁମ ଜୋଇଁ ଗୁଣ ।

ସେହି ଦିନଠାରୁ ଆଉ ଶାଶୁ ଜୋଇଁକୁ ଆଣିବାକୁ ମନ କଲା ନାହିଁ । ଗୋପାଳ ଗୋଟିଏ ଖର୍ଚ୍ଚରୁ ରକ୍ଷା ପାଇ ମନେ ମନେ ବହୁତ ଖୁସି ଅନୁଭବ କଲା ।

—※—

## ଶଳା ଅନ୍ଧ

ରାଜବାଟୀ । ରାଜବାଟୀକୁ କେତେ ଲୋକ ଆସନ୍ତି ଯାଆନ୍ତି । ସେହିପରି ରାଜା କୃଷ୍ଣଚନ୍ଦ୍ରଙ୍କ ରାଜବାଟୀକୁ ସମସ୍ତେ ଯାଆନ୍ତି । ଦିନେ ଜଣେ ଲୋକ କୌଣସି କାରଣରୁ ରାଜଘରକୁ ଆସି ପ୍ରତିଦିନ ଅଲଗା ଭାଷାରେ କଥାବାର୍ତ୍ତା କରେ । ରାଜବାଟୀର ଲୋକ, ରାଜକର୍ମଚାରୀ, ରାଜା କେହି ଜାଣିପାରିଲେ ନାହିଁ । ଏ କିଏ ? କି ଜାତିର ? କେଉଁଠୁ ଆସିଛି ? ଦିନେ ରାଜା ତାହାରି କଥା ଏକୁଟିଆ ବସି ଚିନ୍ତା କରୁଛନ୍ତି, ସେତେବେଳେ ଗୋପାଳ ଭଣ୍ଡ ଆସି କହିଲା ଆଜ୍ଞା ! ଆପଣଙ୍କ ଚନ୍ଦ୍ରମା ଭଳି ମୁହଁକୁ ଅକାଳରାହୁ ଗ୍ରାସିଲା ଭଳି ଜଣାଯାଉଛି କାହିଁକି ? ଦୁଃଖର କାରଣ କ'ଣ ? ତା'ର କଥା ଶୁଣି ରାଜା ଆଗ୍ରହରେ କହିଲେ—ମୁଁ ସେହି ଲୋକଟି କଥା ଭାବୁଛି ଗୋପାଳ ? ସେ ଲୋକଟି କିଏ ? ଘର କେଉଁଠି, କି ବର୍ଣ୍ଣ ? ଆମେ ତ ଆଜଯାଏ କିଛି ସ୍ଥିର କରିପାରିଲେନାହିଁ । ଏହି କଥାରେ କ'ଣ ଆମକୁ ନିନ୍ଦା ହେଉ ନାହିଁ । ରାଜାଙ୍କର ଏହି କଥା ଶୁଣି

ଗୋପାଳ କହିଲେ, ଏହି ଗୁରୁ କଥା ପାଇଁ ଆପଣ ଏତେ ଚିନ୍ତିତ ? ମୁଁ କାଲି ମଧ୍ୟରେ ସବୁ ସ୍ଥିର କରିଦେବି ।

ଭଣ୍ଡ ଏହି କଥା କହି ସେଠାରୁ ଚାଲିଗଲେ । ସେ ତା'ପରଦିନ ରାତିରେ ଗୋଟିଏ ଦରଜା ଦେଇ ଗତାଗତ କରେ । ସେଦିନ ସେ ରାଜସଭାକୁ ଗଲାବେଳେ ଗୋପାଳ ଜାଣିଶୁଣି ତାକୁ ଏକ ଧକ୍କା ମାରିଲେ ଯେ ଲୋକଟି ନିଜକୁ ସମ୍ଭାଳି ନପାରି ପଡ଼ି ଯାଉଁ ଯାଉଁ କହି ପକାଇଲେ—କରେ ଶଳା ଅନ୍ଧ ! ତୋତେ କ'ଣ ଦେଖା ଯାଉନାହିଁ କରେ । ଗୋପାଳ ହସିହସି ତା'ଠାରୁ କ୍ଷମା ମାଗିନେଇ ରାଜସଭାରେ ସମସ୍ତ ବୃତ୍ତାନ୍ତ କହିଲେ । ତା ପରିଚୟ ଗୋପାଳ ଦେଇଥିବାରୁ ସହସ୍ର ଟଙ୍କା ପୁରସ୍କାର ନେଇ ତା'ର ସ୍ତ୍ରୀକୁ ଦେଇ ଖୁସି କରାଇଲେ ।



## ଗୋପାଳ ଭଣ୍ଡ ଓ ବାରିକ

ଦିନକର ଘଟଣା । ଗୋପାଳ ଭଣ୍ଡର ମୁହଁରେ ବହୁତ ଦାଢ଼ି ଏବଂ କେଶ ବଢ଼ି ଯାଇଥିଲା । ଦୈବଯୋଗକୁ ସେଦିନ ସେହି ବାଟେ ରଜାଙ୍କର ବାରିକ ଯାଉଥିଲା । ଗୋପାଳ ଭଣ୍ଡ ବାରିକକୁ ଡେକି କହିଲେ—ଏ ଭାଇ ମୋତେ ଟିକିଏ କ୍ଷିଅର କରିଦେବୁଟି । ସେ ବାରିକ ତ ଜାଣେ ଗୋପାଳ ଭଣ୍ଡ ପଇସା ଦେନାହିଁ ; ତେଣୁ ସେ ଉପାୟ ପାଞ୍ଚି କହିଲା—ଭାଇ ଆଜି ମୋର ବହୁତ କାମ, ଏପରିକି ମରିବାକୁ ବେଳ ନାହିଁ ; ତେଣୁ ତୋତେ କାଲି ଆସି କ୍ଷିଅର କରି ଦେଇଯିବି । ଗୋପାଳ ଚୁପ୍ ରହିଲେ । ତା' ପରଦିନ ସେହି ବାରିକ

ପୁଣି ହେଉଥିବାଟେ ସିବାର ଦେଖି ଗୋପାଳ କହିଲେ—ଭାଇ ! ଏଥର କରି ଦେବ ନାହିଁ କି ? ବାରିକ କହିଲା—ମୁଁ ସବୁ କହୁଛି କାଲି କରିଦେବ । କାଲି କ'ଣ ହେଲାଣି ? ଏପରି ଦୁଇ ତିନିଦିନ କହିବାରୁ ଗୋପାଳ ବୁଝିପାରିଲେ ଯେ ମୁଁ ପଇସା ଦେଉନାହିଁ ବୋଲି ଏପରି କହୁଛି । ହଉ ଠିକ୍ ଅଛି, ସେ ବାରିକ ମୋତେ ମୁହଁରେ ନକହି, ଠକୁଛି । ଠିକ୍ ଅଛି । ତା'ର ଠକାମି ପଣକୁ ମୋର ଭଣ୍ଡାମି ପଣ ଦେଖିବା, କିଏ କାହାର କ'ଣ କରୁଛି ।

ଗୋପାଳ ଏହିପରିଭାବ ଦୁଇତିନିଦିନ ରାଜଦରବାରକୁ ଗଲେନାହିଁ । ପରଦିନ ଦେଳକୁ ଗୋପାଳ ପିଣ୍ଡରେ ଗୋଟିଏ କୃତ୍ରିମ ବଥ ତିଆରି କରି ବହୁ ଅସ୍ତବ୍ୟସ୍ତ ହୋଇ ରାଜଦରବାରରେ ପହଞ୍ଚିଲେ । ରାଜା ଗୋପାଳର ଅସ୍ତବ୍ୟସ୍ତ ଦେଖି ତାଙ୍କର ବାରିକକୁ କହିଲେ— ବଥଟିକୁ ଟିକିଏ ଫୋଡ଼ିଦେବୁଟି । ରାଜାଙ୍କର ହୁକୁମ । ଏଥର ବାରିକ ରାଜାଙ୍କର କଥାକୁ କାଟି ନପାରି ଯାଇ ଗୋପାଳର ପିଣ୍ଡିତଳେ ନହୁରୁଣୀ ଧରି ବସିଲା ! ଗୋପାଳ ପିଣ୍ଡରୁ ଲୁଗାଖୋଲି ବାରିକ ମୁହଁରେ ଫଡ଼୍ କରି ଏପରି ଭାବେ ଝାଡ଼ା ଫେରି ଦେଲେ ଯେ ଗୋପାଳକୁ କି ଆଉ କାହାରିକୁ ମୁହଁ ନ ଦେଖାଇ ସଙ୍ଗେ ସଙ୍ଗେ ପାଣିଥିବା ପୋଖରୀକୁ ପଳାଇଲା ।

—※—

## ଗୋପାଳ ଭଣ୍ଡର ସ୍ତ୍ରୀ

କଥାରେ ଅଛି-ପାଖରେ ଶୋଇ, କାନରେ କହି ତା'କଥା କି ଅନ୍ୟଥା ହୋଇ ! ସେହିପରି ଗୋପାଳ ପାଖରେ ତା'ର ସ୍ତ୍ରୀଶୋଇ

ଏପରି ଚଭୁସ୍ତ ହୋଇ ଗଲଣି, ଯେ ଯାହା କହୁଛୁ ସେ ତା'ର ମୁହେଁ ମୁହେଁ ଜବାବ ଦେବାକୁ ଛାଡ଼ୁନାହିଁ । ସେଦିନ ଗୋପାଳର ସ୍ତ୍ରୀ ତା'ର ପାଞ୍ଚବର୍ଷର ପୁଅକୁନେଇ ନଈକୁ ଗାଧୋଇ ଯାଇଥିଲା । ପ୍ରଥମେ ତା'ର ପୁଅଟିକୁ ଗାଧୋଇ ଦେଇସାରି ଠିଆକରି ଦେଇ ପୋଛୁପାଛୁ ଦେଉଥାଏ । ସେଠାରେ ଆଗରୁ ଅନେକ ଲୋକ ଗାଧୋଉଥାନ୍ତି । ପୁଅଟିକୁ ଦେଖି ଆଉଜଣେ ସ୍ତ୍ରୀ ଲୋକ ତା'ର ପାଖକୁ ଡାକି କହିଲା, ଅଗୋ ! ଏ ପିଲାଟି ଠିକ୍ ମୋର ପୁଅ କାଠିଆପରି ଦିଶୁଛି । ତାକୁ ଲୁଚାଇ ଆଁକୁ ଆଣିବ । ଆଁକୁ ଲୁଚାଇ ତାକୁ ଆଣିବ । ଏହା କହୁ ସେ ସ୍ତ୍ରୀଲୋକଟି ତାର ମାଇପି କଥାରେ ସତକଥା କହୁଥିଲା ।

ସ୍ତ୍ରୀ ଲୋକଟି ଏହା କହିବା ମାତ୍ରେ ଗୋପାଳ ସ୍ତ୍ରୀ ସେ ସ୍ତ୍ରୀ ଲୋକଟିକୁ ଅପଦସ୍ତ କରିବାପାଇଁ ନିଜ ପୁଅକୁ ଚାପୁଡ଼ାଏ ମାରି ଜୋର୍‌ରେ କହି ଉଠିଲା, ଶୁଣରେ ହତଭାଗା ! ତୋ ବାପପରା କହେ, ମୁଁ କାହାରି ପାଖକୁ ଯାଏନାହିଁ ବୋଲି, ତେବେ ଠିକ୍ ତୋପରି ତାଙ୍କର ପୁଅ ହେଲା କିପରି ? ଆଜ ଘରକୁ ଚାଲ; ତୋ ସତଆ ବାପର ସତଅପଣ ମୁଁ ବୁଝିବି । ଏ କଥା ଶୁଣି ସ୍ତ୍ରୀଲୋକଟି କାନରେ ହାତ ଦେଇଦେଲା । ଆଉ କ'ଣ କହିବାକୁ ଯାଇ କିଛି କହିପାରିଲା ନାହିଁ । ସେ ମନେ ମନେ ଭାବିଲା, କାହା ମୁହଁ ଚାହିଁ ମୁଁ ଗାଧୋଇ ଆସିଥିଲି; ପଦେ କଥା କହିଲି ଯେ ଏପରି କଥା ଶୁଣିଲି । ଅନ୍ୟ ସ୍ତ୍ରୀ ଲୋକମାନେ ହସିଉଠି କହି ପକାଇଲେ ଏ କିଏ ଜାଣିଛ ନା ଗୋ, ଏ ପରା ଗୋପାଳ ଭଣ୍ଡର ସ୍ତ୍ରୀ ।

— ✽ —

## ଗୋପାଳ ଭଣ୍ଡ ଓ ତା'ର ସ୍ତ୍ରୀ

ଗୋପାଳ ଭଣ୍ଡ ପ୍ରତିଦିନ ତାହାର ବୈଠକଖାନା ପାଖରେ ବସି ଗୋଟିଏ ଗଳ୍ପଗୁଣୀ ସହିତ ଥଟ୍ଟାତାମସା ହୁଅନ୍ତି । ତାର ସ୍ତ୍ରୀ ଆଗରୁ ଏହା ଜାଣିଥିଲେ ମଧ୍ୟ କେବେ ତାହା ଦେଖି ନଥିଲା । ଦୈବଯୋଗକୁ ସେଦିନ କବାଟର କଣାବାଟେ ଦେଖିଲା ଏବଂ ଗୋପାଳକୁ ବହୁତ ଗାଳିଦେଲା । ଗୋପାଳ ଶୁଣି ନ ଶୁଣିଲା ପରି ମନେ ମନେ ଭାବିଲା, ସ୍ତ୍ରୀକୁ କୌଣସିମତେ ଜବତ ନକଲେ ଭଏ ଜବତ ହେବନାହିଁ । ସେ ଏହିପରି ଭାବୁଛି, ସେହି ସମୟରେ ତାର ମହିଆଁ ଜୋଇଁ ଆସି ଗୋପାଳକୁ ଦଣ୍ଡବତ ହେଲା । ଗୋପାଳକୁ ତ ଠିକ୍ ବାଟ ଦେଖାଗଲା । ସେ ଜୋଇଁର ଉପଯୁକ୍ତ ବ୍ୟବସ୍ଥା କରିଦେଇ କହିଲା—ବାବା, ତୁମେ ଏହି ବୈଠକଖାନାରେ ବସିଥାଅ । ମୁଁ ଘରୁ ଲୁଗା ପିନ୍ଧି ଆସେ । ତୁମେ ସତର୍କରେ ଥିବ, କାରଣ ଏଠାରେ ବହୁତ ଭୂତଗୋଳ ଲାଗିଛି ; କାରଣ ଏ ବୈଠକଖାନା ଜନସ ଉପରେ ସମସ୍ତଙ୍କର ଆଖି, କଏ କେଉଁ ରୂପରେ ଆସୁଛି ତାହାର ଠିକ୍ ଠିକଣା ନାହିଁ । ଗୋପାଳର ଜୋଇଁ କହିଲା, ଆପଣ ନିର୍ଭୟରେ ଯାଆନ୍ତୁ, ମୁଁ ଯତ୍ନରେ ଜଗିଥିବି ।

ସେତେବେଳେ ସନ୍ଧ୍ୟା ଆସିଲା । ଗୋପାଳ ଜୋଇଁ କଥାଶୁଣି ବାହାର ଦରଜାଟି ଲଗାଇ ଦେଇ ଘର ଭିତରକୁ ଗଲା । ତା'ପରେ କିଛି ହଜାଇଥିବା ଭଳି କହିଉଠିଲା—ମୁଁ ବୈଠକ-ଖାନାରେ ଦୀପ ଦେବାକୁ ଭୁଲିଯାଇଛି । ତୁ ଟିକିଏ ଯିବୁଟି ଦୀପଟା ଦେଇ ଆସିବୁ । ନହେଲେ ସେ ଗଳ୍ପଗୁଣୀଟା ଆସି କାହାରିକୁ ନ ଦେଖି କିଛି ନା କିଛି ନେଇଯିବ । ତୁ ତ ଜାଣୁ ସେ କେତେ

ଏଠାକୁ ଆସି ଅଜା ଅଜା କହୁ ଥଣ୍ଡା ତାମସା କରେ । ଆଜ ନଣ୍ଡପୁ ଆସିବ ।

ସ୍ତ୍ରୀ ତ ଏହା ଖୋଜୁଥିଲା । ଗୋପାଳ ପାଟିରୁ କଥା ନସରୁଣୁ ସଙ୍ଗେ ସଙ୍ଗେ ଘର ପାଖରେ ହାଜର ହେଲା । ସେ ମନେ ମନେ ଭାବିଲା, ବୁଢ଼ା କ'ଣ ଦେବ, ଏଠାକୁ ଲୁଚି ବସି ଦେ ବଜାରୁ ମାଇକିନାକୁ ଯେ କୌଣସିମତେ ଧରି ଚୂନ କଳା ଦେଇ ଛାଡ଼ି ଦେବ । ସେ ମାଇକିନିଆ ମଉନମୂହିଁ ଆଉ ଦିନେ ଆସିବାକୁ ମନ କରିବନି । ଗୋପାଳର ସ୍ତ୍ରୀ ଏହିପରି ଭାବ ଦ୍ୱାରଙ୍କ ପରି ଚୁପ୍‌ଚୁପ୍ ଯାଇ ଘରଭିତରେ ବସିଲା । ଆଗରୁ ତ ଜୋଇଁ ସାବଧାନ ଥିଲା, ଯେମିତି ଶାଶୁ ଉପରେ ନଜର ପଡ଼ୁଛି, ସେ ତାଙ୍କୁ ସ୍ତ୍ରୀର ଭାବ କୁଣ୍ଢାଇ ପକାଇଲା । ଶାଶୁ ତାର ଜୋଇଁକୁ ଗଉଡୁଣୀ ଭାବ ଆଦୁର ଜୋର୍‌ରେ ଜାବୁଡ଼ି ଧରିଲା । ଦୁହେଁ ଯାକ କୁସ୍ତାକୁସ୍ତି ହେଲେ । ଜୋଇଁ କହୁଥାଏ, ରହ ବଜ୍ଜାତ୍ ଯିବୁ କୁଆଡ଼େ ? ଶାଶୁ କହୁଥାଏ ଏତେ ଦିନକରେ ମୋର ହାବୁଡ଼ରେ ପଡ଼ିଛୁ, ମୁଁ ତୋତେ କ'ଣ ଛାଡ଼ିବ ? ରହ ଗୋଟିଏ ଲୋକକୁ ସର୍ବନାଶ କରିସାରିଲୁଣି । ଏଣେ ତାଙ୍କର ପାଟିଗୋଳ ଶୁଣି ଗୋପାଳ ତାଙ୍କର ଅଭିନୟ ଦେଖିବା ପାଇଁ ଗୋଟିଏ ଆଲୁଅ ଧରି ସେଠାରେ ପହଞ୍ଚି ତାଙ୍କର ଗଡ଼ାପଡ଼ା ଦେଖି କହିଲା – ବେଶ୍ ଚାଲି ଲାଗିଛି । ଯାଙ୍କୁ ସିନା କହନ୍ତି ଶାଶୁ ଜୋଇଁ । ଗୋଟିଏ ଜୋଇଁ ତ ଆସିଥିଲା, ସେ ଠିକ୍ ଏହିପରି ନାଟ ଲଗାଇ ଗଲା, ପୁଣି ତୁମେ ସେହି ନାଟ ଲଗାଇଛ । ଛି, ଛି, ତୁମକୁ ଶାଶୁ ଜୋଇଁ କରି ଗଢ଼ିଲା କିଏ ? ଦୁହେଁଯାକ ଦୁହିଁଙ୍କ ମୁହଁକୁ ଅନାଇ ଲାଜରେ ପଳାଇଲେ । ଗୋପାଳ ହସି ହସି ବୈଠକଖାନାରେ ଶୁଇ ପକାଇଲା ।



# ଦେହ ଚଟାଚଟି

ମଧୁବନ ଭଳି ରାଜା କୃଷ୍ଣଚନ୍ଦ୍ର କୌଣସି ଏକ ଦିନରେ ସଭାକରି ବସିଥାନ୍ତି, ସେତିକିବେଳେ ଗୋପାଳ ଭଣ୍ଡ ଆସି ରାଜସଭାରେ ପହଞ୍ଚିଲେ। ରାଜା ରହସ୍ୟ କରିବା ପାଇଁ କହିଲେ, ଗୋପାଳ କାଲି ରାତିରେ ଗୋଟିଏ ଅଦ୍ଭୁତ ସ୍ୱପ୍ନ ଦେଖିଲି, ସେଥିରୁ ମୋର ମନଟା ଏ ପର୍ଯ୍ୟନ୍ତ ସ୍ଥିର ହେଉନି। ସ୍ୱପ୍ନଟା ତୁମକୁ କହିବି ବୋଲି ବର୍ତ୍ତମାନ ଡକାଇ ପଠାଇଥା'ନ୍ତି; କିନ୍ତୁ ଯଥା ସମୟରେ ପହଞ୍ଚି ଭଲ କରିଛ। ଗୋପାଳ ପଚାରିଲେ-ଆଜ୍ଞା! ସ୍ୱପ୍ନଟା ଟିକେ ଶୁଣାନ୍ତୁ! ରାଜା କହିଲେ, ରାତିରେ ଏହି ସ୍ୱପ୍ନ ଦେଖିଲି ଯେ, ତୁମେ ଆଉ ମୁଁ ମିଶି ଗୋଟିଏ ଯାଗାକୁ ଯାଇଥିଲେ। ଯିବା ବାଟରେ ଦୁଇଟି ଗଭୀର ଗାତ ଥିଲା। ଗୋଟିଏ ଗୁଡ଼ରେ ଓ ଅନ୍ୟଟି ବିଷ୍ଠାରେ ପୂର୍ଣ୍ଣ ଥିଲା। ବାଟରେ ଯାଉ ଯାଉ ଗୋଡ଼ ଖସିଯିବାରୁ ମୁଁ ଗୁଡ଼ରେ ଏବଂ ତୁମେ ବିଷ୍ଠାରେ ପଡ଼ିଗଲ। ସେଠାରୁ ମୋର ନିଦ ଭାଙ୍ଗିଗଲା।

ଏଥିରେ ରାଜକର୍ମୀମାନେ ଜୋର୍‌ରେ ହସି ଉଠିଲେ; କିନ୍ତୁ ଗୋପାଳ ଅପମାନିତ, ଲଜ୍ଜିତ ନହୋଇ କହିଲା—ମହାରାଜା! ମୁଁ ବି ଠିକ୍ ସେହି ସ୍ୱପ୍ନ ଦେଖିଛି। ଆମେ ଦୁହେଁ ଗାତରେ ପଡ଼ିଯିବାରୁ ଆପଣଙ୍କ ନିଦଟା ଭାଙ୍ଗିଗଲା; କିନ୍ତୁ ମୋ ନିଦଟା ଭାଙ୍ଗିନି ନାହିଁ। ମୁଁ ଦେଖାଇ ଦେଖିଲି ଯେ ଆମେ ଧୋଇହେବାକୁ ବହୁତ ବାଟ ବୁଲିଲେ କିନ୍ତୁ କେଉଁଠି ପାଣି ନପାଇ ବାଧ୍ୟ ହୋଇ ଆପଣ ମୋ ଦେହକୁ ଚାଟି ସଫା କରିଦେଲେ, ଆଉ ମୁଁ ଆପଣଙ୍କର ଶ୍ରୀଅଙ୍ଗକୁ ସଫା କରିଦେଲି। ସେଠାରୁ ସିଧା ରାଜ୍ୟକୁ ଫେରି ଆସିଲେ। ନିଦଟା ଭାଙ୍ଗିଗଲା। ମୁଁ ଏହା କହିବାଲାଗି ଶ୍ରୀମୁଖକୁ ସିଧା ଝପଟାଇଛି।

ଏହିପରି କଥା ଶୁଣି ରାଜାଙ୍କୁ ବହୁତ ଲଜ୍ଜାବୋଧ ହେଲା; ତେଣୁ ସେଠାରେ ଉପସ୍ଥିତ ଲୋକମାନେ ଆହୁରି ଜୋରରେ ହସିଉଠିଲେ ।

—※—

## ଗୋପାଳର କୃଷ୍ଣ ପ୍ରାପ୍ତି

ଗୋପାଳ ରାଜସଭାକୁ ଯାଇ ବହୁତ ଟଙ୍କା ଉପାର୍ଜ୍ଜନ କରୁଥିଲେ ମଧ୍ୟ ତାହାର ଏତେବଡ଼ ପରିବାରକୁ ଚଳାଇବା ପାଇଁ ଅସୁବିଧା ହୁଏ । ଏକଦା ଗୋପାଳର କିଛି ଅର୍ଥ ଦରକାର ପଡ଼ିଲା । ସେ ସବୁଆଡ଼ୁ ନିରୁପାୟ ହୋଇ ପୁଅକୁ କହିଲା, ତୁ ଆଜି ଆଖିରେ ଟିକିଏ ଲଙ୍କାମରିଚ ଲଗାଇ କାନ୍ଦି କାନ୍ଦି ରାଜସଭାକୁ ଯା । ରାଜା ପଚାରିଲେ ତୁ କହିବୁ, ବାପା ମୋର କୃଷ୍ଣପ୍ରାପ୍ତି ହୋଇଛନ୍ତି; ଟଙ୍କା ପଇସା ଘରେ କିଛି ନାହିଁ, ଟଙ୍କା ଦିଅନ୍ତୁ ।

ଯେପରି କଥାରେ ଅଛି—ଯାହାର ବାପା ଘୋଡ଼ାଚଢ଼ା, ତା ପୁଅ ଥୋଡ଼ା ଥୋଡ଼ା । ଗୋପାଳଠାରୁ ତା'ର ପୁଅ ଆହୁରି ବାଲ୍ୟଖ । ସେ ବାପର ହୁକୁମ ପାଇ ସଙ୍ଗେ ସଙ୍ଗେ ରାଜସଭାରେ ପହଞ୍ଚି କଥାଟାକୁ ବଢ଼ାଇ ଦେଇ କହିଲା—ପ୍ରଭୁ ? ବାପା ମୋର କାଲି କୃଷ୍ଣପ୍ରାପ୍ତି ହୋଇଛନ୍ତି । ଏହିପରି କଥାଶୁଣି ରାଜସଭାରେ ଥିବା ଲୋକମାନେ ବହୁତ ମନଦୁଃଖ କଲେ । ଏପରିକି ନିଜର କେଉଁ ମଲେ ଏପରି ମନଦୁଃଖ ହେବନାହିଁ । ଗୋପାଳର ଶ୍ରାଦ୍ଧ ନିମନ୍ତେ କିଛି ମୋଟ ଟଙ୍କା ଦେଇ ତା'ର ପୁଅକୁ ବିଦା କରିଦେଲେ ।

ଗୋପାଳ ତା' ପରଦିନ ଗୋଟିଏ କୃଷ୍ଣ କଣ୍ଢେଇ ସଂଗ୍ରହ କରି ରାଜଦରବାରରେ ପହଞ୍ଚିଲା । ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ, କହୋ ଗୋପାଳ ! ତୁମେ ପରା କାଲି କୃଷ୍ଣପ୍ରାପ୍ତି ହୋଇଥିଲ, ତୁମ ପୁଅ ଆସି କହି ମୋଠାରୁ ଟଙ୍କା ନେଇକରି ଗଲା । ମୋ ମନ୍ତ୍ରୀ ଖୋଜୁ-ଥିଲେ ନା ! ଗୋପାଳ କହିଲା, ନାହିଁ ଆଜ୍ଞା ! ସେ ସତ କଥା କହିଛି । ମୂର୍ତ୍ତିଟିକୁ କାଢ଼ି କହିଲା—ଏହି କୃଷ୍ଣ ପ୍ରାପ୍ତି ମୋତେ କାଲି ହୋଇଥିଲା । ରାଜା ନିରୁତ୍ତର ରହିଲେ ।



## ତୁମ ମୁହଁ ଚାହିଁବି ନାହିଁ

କୌଣସି କାରଣରୁ ରାଜା ଥରେ ଗୋପାଳ ଉପରେ ବିରକ୍ତ ହୋଇ କହିଲେ—ଗୋପାଳ, ତୁମେ ଯାଅ ! ମୁଁ ତୁମ ମୁହଁ ଆଉ ଚାହିଁବି ନାହିଁ । ଗୋପାଳ ବହୁତ କାକୁତି ମିନତି କଲା । ବିଫଳ ହେବାରୁ ବାଧହୋଇ ଘରକୁ ଫେରିଲା । ତା ପରଦିନ ପୁଣି ରାଜ-ସଭାକୁ ଗଲା; କିନ୍ତୁ ପଛେଇ ପଛେଇ ଯାଉଥିଲା । ଗୋପାଳର ଏପରି ଚାଲିଚଳଣି ଦେଖି ରାଜା ରାଗି କହିଲେ, ତୁମେ ଏପରି କ'ଣ ଆସୁଛ ? ଗୋପାଳ କହିଲା—ମହାରାଜ ଆପଣ ପରା ମୋ ମୁହଁ ଚାହିଁବେ ନାହିଁ; ତେଣୁ ମୁଁ ମୁହଁକୁ ଏପାଖ କରି ପଛେଇ ପଛେଇ ଆସିଲି । ରାଜା ଆହୁରି ରାଗିଯାଇ କହିଲେ : ମୁଁ ପରା ତୁମକୁ ଆସିବାକୁ ମନା କରିଥିଲି, ତୁମେ ପୁଣି ଆସିଲ କାହିଁକି ? ଗୋପାଳ ହସି ହସି କହିଲା—ନାଇଁ ଆଜ୍ଞା ! ଆପଣ ତ ମୋତେ ମନାକରି-ନଥିଲେ, ଏଠାକୁ ଆସିବାକୁ ଖାଲି ଆପଣ କହିଥିଲେ, ମୋ ମୁହଁ

ବୁଝିବେ 'ନାହିଁ; ତେଣୁ ମୋର କିଛି ଭୁଲ୍ ନାହିଁ । ଏହା ଶୁଣି ଗୋପାଳଙ୍କର ବୁଦ୍ଧିକୁ ବହୁତ ପ୍ରଶଂସା କଲେ ଏବଂ ପୁରସ୍କାର ମଧ୍ୟ ଦେଲେ ।



## ଗୋପାଳର କାର୍ତ୍ତିକ ପୂଜା

ରାଜା କୃଷ୍ଣଚନ୍ଦ୍ର ସବୁ ଗୋପାଳର ବୁଦ୍ଧି ଓ ଚତୁରତା ଦେଖି ତାକୁ ଖୁବ୍ ଭଲ ପାଉଥିଲେ । ସେଥିପାଇଁ ଗୋପାଳର ଯାହା ଯେତେବେଳେ ଦରକାର ହେଉଥିଲା ରାଜା ସବୁ ଦେଉଥିଲେ । ଏପରିକି ବଗିଚାରେ ପୋଖରୀ ଖୋଳିବା ଓ ଚାଷକରି ଖାଇବା ଲାଗି ଜମିବାଡ଼ି ଦେଇଥିଲେ । ଏଥିରେ ଗୋପାଳର ପରିବାର ଖୁବ୍ ଆନନ୍ଦରେ ଚଳିଯାଉଥିଲେ, କେଉଁଥିରେ ଅଭାବ ନଥିଲା । ଭଗବାନଙ୍କ ଦୟାରୁ କେବଳ ମାତ୍ର ଗୋଟିଏ ଅଭାବ ଥିଲା । ସେ ଜା ଗୋପାଳର ଟିକିଏ ଛଣ ଛାତ ବୋଲି ଯେତେ ରୋଜଗାର କଲେ ମଧ୍ୟ ଅଭାବଟି ପୂରଣ କରିପାରୁ ନଥିଲା ।

ଗୋପାଳର ଅଭାବ ହେଉଛି ତାର ଛପର ଖଣ୍ଡିକ କୋଠାଘର ହୁଅନ୍ତା । ଦିନକୁ ୫।୬ ଜଣ ଭଦ୍ରଲୋକ ତା' ଘରେ ଆସି ମୁହଁ ଧୂଅନ୍ତେ । ଏହି ଅଭାବଟି ଯେ କୌଣସି ମତେ ପୂରଣ ନ କରି ତାର ମନେ ମନେ ଭାବେ, ରାଜା ମୋତେ ସବୁ ଦେଇଛନ୍ତି, ମାତ୍ର ଏତିକ କରିଦେବାକୁ ତାଙ୍କୁ ସ୍ମରଣ ହେଉନି । ଯେ ଯାହାହେଉ ମୋତେ କିଛି ବୁଦ୍ଧି ଉଦ୍ଭାବନ କରିବାକୁ ହେବ ।

ଗୋପାଳ ଏପରି ଶବ୍ଦ ଗୋଟିଏ ବୁଦ୍ଧି ବାହାର କଲା । ସେଦିନ ଯାଇ ରାଜ କର୍ମଚାରୀମାନଙ୍କୁ କାର୍ତ୍ତିକ ପୂଜା ଉପଲକ୍ଷେ ନିମନ୍ତ୍ରଣ କରି ଦେଇ ଆସିଲା । ଘରେ ପହଞ୍ଚି ଚାଲି ଚାଳ ଉପରେ ଗୋଟିଏ ବିଛଣା ପକାଇ ତା'ର ପୁଅକୁ ଡାକି କହିଲା—ତୁ ଏଣ୍ଟ ଦାଣ୍ଡ ଦୁଆରେ ବସିଥା, ଯେ ମୋତେ ଆସି ଡାକିବ ତୁ କହିବୁ ବାପା ଉପରେ ଅଛନ୍ତି । ଦେଖା କରିବାକୁ ହେଲେ ଉପରକୁ ଯାଆନ୍ତୁ । ଏହା ବ୍ୟତୀତ ଅନ୍ୟ କିଛି କହିଲେ ମାଡ଼ ଖାଇବୁ । ଗୋପାଳ ଏହିପରି ପୁଅକୁ ତାଗିଦ୍ କରି ଯାଇ ପିଢ଼ା ଉପରେ ବସିଲା । ଏଣେ ରାଜା ତାଙ୍କ ପାରିଷଦମାନଙ୍କୁ ଧରି ନିମନ୍ତ୍ରଣ ରକ୍ଷା କରିବା ପାଇଁ ଠିକ୍ ସମୟରେ ଉପସ୍ଥିତ ହେଲେ । ଗୋପାଳର ଦୁଆରେ ଉପସ୍ଥିତ ହୋଇ ଦେଖିଲେ ଗୋପାଳ ନାହିଁ ନା, କାର୍ତ୍ତିକ ନାହିଁ ?

ପୂଜାର କୌଣସି ଲକ୍ଷଣ ନ ଦେଖି ରାଜା ଇଆଡ଼େ ସିଆଡ଼େ ଅନାଇ ଅନାଇ ଦେଖିଲେ ଦାଣ୍ଡ ଦୁଆରେ ଗୋପାଳର ପୁଅ ବସିଛି । ଗୋପାଳର ପୁଅକୁ ପଚାରିଲେ, କିରେ ! ତୋର ବାପା କାହିଁ ? ମୋର ବାପା ଆଜ୍ଞା ଉପରେ ଅଛନ୍ତି । ଆସନ୍ତୁ ମୁଁ ଆପଣମାନଙ୍କୁ ବାଟ ଦେଖାଇ ଦେବି । ଏ କଥା ଶୁଣି ରାଜା ବିସ୍ମୟରେ ପଚାରିଲେ, ଆରେ ମିଛୁଆ ! ତୁମର ଘରେ ଗୋଟିଏ ଉପର କେଉଁଠୁ ଆସିଲା ? ଗୋପାଳର ପୁଅ କହିଲା, ନାଇଁ ମୁଁ ମିଛ କହୁନି । ଆସନ୍ତୁ ନାହାନ୍ତୁ ମୁଁ ଦେଖାଇ ଦେବି ।

ପିଲାଟିର କଥାକୁ କୌତୁକ ମନେକରି ରାଜା ଯିବାକୁ ବାହାରିଲେ । ପିଲାଟି ଆଗେ ଆଗେ ବାଟ କଢ଼ାଇଲା । ରାଜା ଉପରକୁ ଚାହିଁଲେ ଗୋପାଳ ଚାଳ ଉପରେ ଥାଇ ଡାକ

ପକାଇଲ୍  ମଣିମା ଏହି ଉପରକୁ ଆସିବା ହୁଅନ୍ତୁ । ଗରିବର ଆଜି ସୁପ୍ରଭାତ । ଆଜି ଆପଣଙ୍କ ପଦରଜ ପଡ଼ି ଘର ମୋର ପବିତ୍ର ହୋଇଗଲା । ଆସନ୍ତୁ ଆଜ୍ଞା ! ଏହି ଶିଡ଼ି ଲାଗିଛି । ଧୀରେ ଧୀରେ ଆସନ୍ତୁ, ରାଜା ହର୍ଷ ଓ ବିମର୍ଷରେ ପଚାରିଲେ—ଗୋପାଳ ! ଏଇଟା କ'ଣ ତୁମର ଉପର ? ଗୋପାଳ କହିଲା, ଆପଣ ବଡ଼ଲୋକ, ଆପଣଙ୍କର ସ୍ଥାନ ବହୁତ ଉଚ୍ଚରେ । ଆପଣ ଆସି ନିମ୍ନସ୍ଥାନକୁ ଘୃଣା କରିବେ ବୋଲି ମୁଁ ଏହି ଉପରେ ସ୍ଥାନ କରିଛି । ଆପଣ ଆସନ୍ତୁ ।

ରାଜା ଗୋପାଳର ଚତୁରତା ଏବଂ ମନୋଭାବ ଜାଣିପାରି କହିଲେ, ଗୋପାଳ ! ଏଥର ତଳକୁ ଆସ । ରାତି ପାହିଲେ ତୁମର କୋଠାଘର ଆରମ୍ଭ ହେବ । ଗୋପାଳ ଏଥର ତଳକୁ ଆସି ରାଜା ଏବଂ କର୍ମଚାରୀମାନଙ୍କୁ ଉପଯୁକ୍ତ ଅଭ୍ୟର୍ଥନା କରି ସମସ୍ତଙ୍କୁ ଉତ୍ତମ-ରୂପେ ଭୋଜନ ଦେଇ ବିଦାୟ ଦେଲା । ତା ପରଦିନ ଗୋପାଳର କୋଠା ଆରମ୍ଭ ।



## ଗୋପାଳର ଘରେ ଚୋରୀ

ଦିନେ ରାଜା କୃଷ୍ଣଚନ୍ଦ୍ର ସଭାରେ ବସି ନାନାପ୍ରକାର ରହସ୍ୟ ଓ ଥଟ୍ଟାରେ କଥାବାର୍ତ୍ତା ହେଉ ହେଉ କହିଲେ—ଏଥି ମଧ୍ୟରୁ ଯେ କେହି ଗୋପାଳ ଘରୁ କିଛି ଜିନିଷ ଚୋରି କରି ଆଣିବ, ମୁଁ ତାକୁ ଯଥମତ ପୁରସ୍କାର ଦେବି । ଏକଥା ଶୁଣି ସମସ୍ତେ ଭାବିଲେ—

ଗୋପାଳ ତ ଆମ୍ଭମାନଙ୍କ ମଧ୍ୟରୁ ବଡ଼ ଓ ଚତୁର । ତା ସବୁ ଦୋଷ ଖୋଜିବା ସହଜ କଥା ନୁହେଁ । ଯେ ଦୋଷ କରିବାକୁ ଯିବ ସେ ନିଶ୍ଚୟ ବିପଦରେ ପଡ଼ିବ ଏଥିରେ ସନ୍ଦେହ ନାହିଁ; ତେଣୁ କେହି ରାଜି ହେଲେ ନାହିଁ ଦୋଷ କରିବାକୁ । ରାଜା ଏହା ଜାଣିପାରି କହିଲେ—ଯେ ଦୋଷ କରିବ ମୁଁ ତାକୁ ବହୁତ ପୁରସ୍କାର ଦେବି ।

ଏହା ଶୁଣି ଜଣେ ଅତି ଗରିବ ବ୍ରାହ୍ମଣ ଉଠିପଡ଼ି କହିଲା—ମହାରାଜ ! ମୁଁ ନିଶ୍ଚୟ ଦୋଷ କରି ଆଣିବି । ରାଜା କହିଲେ, ଆଚ୍ଛା ଯାଅ କାଲି ତୁମେ ଦୋଷ ଜିନିଷ ଦେଖାଇଲେ ମୁଁ ପୁରସ୍କାର ଦେବି । ତେଣେ ରାଜାଙ୍କର ଷଡ଼ଯନ୍ତ୍ର ଗୁପ୍ତ ଜାଣିପାରି ଗୋଟିଏ ମାଠିଆରେ ବହୁତ ପୂରାଇ ତା ଉପରେ ଦୁଇ ଚାରିଟା ମୋହର ଅସରପି ଥୋଇ ଯତ୍ନ କରି ରଖିଲା ଏବଂ ନିଜେ ସତର୍କ ହୋଇ ରହିଲା ? ଏକଥା ତ ବ୍ରାହ୍ମଣ ଜାଣେନି , ଖୁବ୍ ରାତି ହେବାରୁ ସେ ଗୋପାଳ ଘରକୁ ଆସି ସିନ୍ଧିକଲା । ଖୋଳିବାର ଶବ୍ଦ ଶୁଣି ଗୋପାଳ ସତର୍କ ହୋଇ ରହିଥିଲା । ଯେତେବେଳେ ବ୍ରାହ୍ମଣ ମୁଣ୍ଡ ଗଳାଇଛି ସେ ତାର ଚୁଟିଟିକୁ ଚଟ୍‌କରି କାଟିଦେଲା । ସିନ୍ଧି ଗାତରେ ଥାଇ ବ୍ରାହ୍ମଣ ଏ କଥା ଜାଣିପାରିଲା ନାହିଁ । ସେ ସେହି ସିନ୍ଧି ଗାତରୁ ବାହାରି ଆଗେ ଉକ୍ତ ମୋହର ମାଠିଆକୁ ଦେଖି ଖୁସି ହୋଇଗଲା । ଆଉ କୁଆଡ଼କୁ ନ ଚାହିଁ ସଙ୍ଗେ ସଙ୍ଗେ ମାଠିଆକୁ ଧରି ଘର ଭିତରୁ ବାହାରକୁ ବାହାରି ଆସିଲା ଓ ତାକୁ ମୁଣ୍ଡେଇ ଧରି ରାଜାଙ୍କ ଘରକୁ ସିଧା ଚାଲିଗଲା ।

ଅନ୍ୟ ପକ୍ଷରେ ଗୋପାଳ ଜାଣିଶୁଣି ତା'ର ପଛେ ପଛେ ଚାଲିଥାଏ । ଯେତେବେଳେ ସେ ବ୍ରାହ୍ମଣଟି ରାଜସଭା ନିକଟରେ ପହଞ୍ଚିବାର ଜଣାପଡ଼ିଲା ଭଣ୍ଡ ତା' ପରେ ଉକ୍ତ କଳସୀଟିକୁ ଢୋକରି ପିଟିଦେଲା ପାହାରେ । ଉକ୍ତ କଳସୀ ମଧ୍ୟରେ ଥିବା ବିଷ୍ଠାରେ ବ୍ରାହ୍ମଣ ଜୁଡ଼ୁବୁଡ଼ୁ ହୋଇ ପଡ଼ିଲା । ବିଷ୍ଠା ଗନ୍ଧରେ ଏବଂ ଲଜ୍ଜାରେ ହତଜ୍ଞାନ ହୋଇ ସିଧାସଳଖ ପୋଖରୀ ଆଡ଼କୁ ଧାଇଁଲା ।

ତା' ଆରଦିନ ରାଜା ସଭା କରି ବସିଥାନ୍ତି । ଉକ୍ତ ବ୍ରାହ୍ମଣଟି ଯାଇ ଗୋଟିଏ କୋଣରେ ଲଜ୍ଜାରେ ମୁହଁକୁ ତଳକୁ କରି ବସିଥାଏ । ସେତେବେଳେ ଯାଏ ତା' ଦେହରୁ ସମ୍ପୂର୍ଣ୍ଣ ଗନ୍ଧ ଛାଡ଼ି ନଥାଏ । ଏହି ସମୟରେ ଭଣ୍ଡ ସଭାରେ ପହଞ୍ଚି ଯାଇ ରହସ୍ୟ କରି କହିଲା— ମହାରାଜା କାଲି ରାତ୍ରିରେ ମୋ ଘରୁ ଅନେକ ଜିନିଷ ଚୋରି ହୋଇଛି । ରାଜା ଜାଣିଲା ଭଳି କହିଉଠିଲେ—ତୁମେ କଣ ସେ ଚୋରକୁ ଧରି ପାରିଲ ନାହିଁ; ଭଣ୍ଡ କହିଲା, ଧରିଥାନ୍ତି ଆଜ୍ଞା; କିନ୍ତୁ ସେ ଲୋକଟି ଆପଣଙ୍କର ସଭା ଲୋକ ହୋଇ ଛାଡ଼ିଦେଲି । ମୋର ସଭାଲୋକ ହେଲେ ମଧ୍ୟ ସେ ତ ଚୋର, ତା'ର ଶାସ୍ତି ଦେବା ଉଚିତ । ଭଣ୍ଡ କହିଲା—ଶାସ୍ତି ଦେଇଛି ଆଜ୍ଞା । ଏହି ତାର ଚିହ୍ନ ଦେଖନ୍ତୁ । ସଭାରେ ପରସ୍ପରକୁ ଚାହିଁ ହସି ଉଠିଲେ । ରାଜା ରହସ୍ୟକୁ ବଢ଼ାଇବା ପାଇଁ କହିଲେ—ସତ କହିଲ, ତୁମଘରୁ କ'ଣ ଚୋରି ଯାଇଛି ? ଭଣ୍ଡ କହିଲା ଆଜ୍ଞା ମଣିଷ ପିଣ୍ଡଆ । ଜଣେ ଅଦାଲତମୁନେ ଦେବ ବୋଲି ମୋଘରେ ତାରିଦିନ ହେଲା ବନ୍ଧଣା ଦେଇ-ଯାଇଥିଲ । ସେଥିପାଇଁ ବଂଶପାଟ ଗୋଟିଏ ମାଠିଆ ପୂରି କରି ରଖିଥିଲି । ସେ ଚୋରଟି ତାକୁ ନେଇ ଆସିଛି ।

ରଜା ହସି ହସି ପଚାରିଲେ—ଆରେ, ମଣିଷ ପିଚ୍ଛିଆ କଣ ? ଭଣ୍ଡ କହିଲା, ଆଜ୍ଞା ବଷ୍ଟା । ବନ୍ଧଣା ଧରିଲା ଦିନରୁ ଆମେ ବଇଁଶ ସାଗ ଲାଗି ଗୋଟିଏ କଳସୀରେ ହଗୁଥିଲୁ । ସେ ଚୋର ସେଇଟାକୁ ନେଇ ଆସିଲା; ହେଲେ ମଧ୍ୟ ସେ ଆପଣଙ୍କ ସିଂହଦ୍ୱାର ପାର ନ ହେଉଣୁ ଏମିତ ପାହାରେ ଦେଲି ଯେ, ସେ ବଷ୍ଟାରେ ପୂରାପୂରି ଗାଧୋଇ ପଡ଼ିଲା ।

ଏକଥା ଶୁଣି ସମସ୍ତେ ଜୋର୍‌ରେ ହସି ଉଠିଲେ । ବିଚରା ବ୍ରାହ୍ମଣ ଏ ଲାଜରୁ ଉଦ୍ଧାର ପାଇବା ପାଇଁ ହଠାତ୍ ଉଠିଆସି ଗୋପାଳ ଭଣ୍ଡର ହାତ ଧରି କ୍ଷମା ପ୍ରାର୍ଥନା କରିନେଲା । ରଜା ଦୁହିଁଙ୍କର ରହସ୍ୟ ଦେଖୁଥିଲେ, ଦେଖି ସାରି ଉଭୟଙ୍କୁ ପୁରସ୍କାର ଦେଇ ବିଦାୟ ଦେଲେ ।



## ଗୁରୁ ବେଶ୍ ନାମ ପାଇଲେ

ଗୋଟିଏ ଲୋକ ଗୋଟିଏ ଗ୍ରାମରେ ଏକୁଟିଆ ତା'ର ଘରଦ୍ୱାରକୁ ନେଇ ବାସ କରେ । ସେହି ଗ୍ରାମରେ ମଧ୍ୟ ଅନେକ ଲୋକ ତାଙ୍କର ପରିବାକୁ ନେଇ ବାସ କରୁଥାନ୍ତି । ସେହିପରି ଗୋପାଳ ଜଣେ ବ୍ରାହ୍ମଣ ଗୁରୁଙ୍କର ଶିଷ୍ୟ । ଗୋପାଳ ଭଳି ଗୁରୁଙ୍କର ବହୁତ ଶିଷ୍ୟ ଥାଆନ୍ତି । ଦିନେ ସେ ଶିଷ୍ୟ ଘରକୁ ବାହାରିଲେ । ଏକୁଟିଆ ଯିବାକୁ ଖରାପ ମନେ ହେବାରୁ ଗୋପାଳକୁ

ସଙ୍ଗରେ ଘେନଗଲ । ସେ ଗ୍ରାମରେ ପହଞ୍ଚବାରୁ ଜଣେ ଶିଷ୍ୟ ତାଙ୍କର ପାଦଧୌତ କରିଦେଲ ଏବଂ ସୁନ୍ଦର୍ୟ ଆସନ ପକାଇ ବସିବାକୁ ଅନୁରୋଧ କଲ । ତତ୍ ସଙ୍ଗେ ସଙ୍ଗେ ଗୋପାଳକୁ ମଧ୍ୟ ଯଥୋଚିତ ସମ୍ମାନ କଲ । ସଞ୍ଜ ହେଲରୁ ଶିଷ୍ୟଟି ରୋଷେଇ କରିବାର ଯୋଗାଡ଼ କରିଦେଲ ତରକାରି କରିବା ଲଗି ବଡ଼ ବଡ଼ କଇମାଛ ଆଣି ଯୋଗାଡ଼ କରିଦେଲ । ଗୁରୁ ତାଙ୍କର ଅତି ଯତ୍ନରେ ରୋଷେଇ କରି ଭୋଜନର ବ୍ୟବସ୍ଥା କଲେ । ଦୁଇଖଣ୍ଡ ପତ୍ର ପକାଇ ନିଜପାଇଁ ଓ ଗୋପାଳ ପାଇଁ ଭାତ ବାଢ଼ିଲେ । ତା' ପରେ ତରକାରି ବାଢ଼ିଲେ ; କିନ୍ତୁ ଗୁରୁ ଟିକିଏ ଲୋଭ ଦୋଷରୁ ସେ ବଡ଼ ବଡ଼ କଇମାଛ ଗୁଡ଼ିକ ନେଇ, ଗୋପାଳ ପତ୍ରରେ ଦୁଇଟି ଛୋଟ କଇମାଛରୁ ଅଧେ ଦେଇ ଗୋପାଳକୁ ଡାକିଲେ । ଯେତେବେଳେ ଗୁରୁ ବାହାରକୁ ହାତ ଧୋଇବାକୁ ଗଲେ; ସେତେବେଳେ ଗୋପାଳ ନିଦ ବାଉଳାରେ ଉଠିଲ ପରି ଉଠିପଡ଼ି ଗୁରୁଙ୍କ ପତ୍ରରେ ବସିଯାଇ ଭାତରେ ଲୁଣ ପକାଇ ଚକଟାଉଥାଏ । ଗୁରୁ ମୁହଁ ହାତ ଧୋଇ ଦେଖନ୍ତି ତ ଗୋପାଳ ତାଙ୍କର ପତ୍ରରେ ହାତ ପକାଇ ଚକଟାଉଛି ।

ଗୁରୁ ସେତେବେଳେ ଖୁବ୍ ରାଗିଯାଇ ହତଜ୍ଞାନ ହୋଇପଡ଼ିଲେ ଏବଂ ହଠାତ୍ କ୍ରୋଧରେ କହି ଉଠିଲେ, ତୁ ସଇତାନ କ'ଣ କଲୁ । ତୋ ପତ୍ରଟିକୁ ଛାଡ଼ି ମୋ ପତ୍ରଟିକୁ ମାରି କଲୁ । ବ୍ରହ୍ମଦୋଷୀ ! ଚଣ୍ଡାଳ ତୋର ଟିକେ କାଣ୍ଡଜ୍ଞାନ ନାହିଁ ? ତୁ ଜାଣିଶୁଣି ମୋର ଖାଇବା ପତ୍ରରେ ଧୂଳି ଦେଲୁ । ଗୋପାଳ ଏକଥା ଶୁଣି କହିଲ, ମୁଁ ତ ଏହା ଜାଣିଶୁଣି କରିନ । ମୋତେ ଡାକିଦେଲେ ମୁଁ ନିଦ

କାଉକାରେ ଆସି ଏହି ପତ୍ରରେ ବସିଗଲା । ସେଥିପାଇଁ ମୋତେ ତୁମେ ଏତେ ଅଭିଶାପ ଦେଉଛ ? ମୁଁ ତ ତୁମର କିଛି କେତନ ଖାଇନ ଯେ ଏତେ କଥା ଶୁଣିବ । ଏହି ତୁମ ଭାତ ରହିଲା; ମୁଁ ଯାଉଛି; କାଲି ରାଜାଙ୍କ ପାଖରେ ଏକଥା ପଡ଼ିବ ।

ଗୋପାଳର କଥାଶୁଣି ଗୁରୁ ଟିକଏ ଦବିଯାଇ କହିଲେ, ହେଉ ହେଉ—ଯାହା ହେବାରେ ହେଲାଣି, ଏଥର ଖା' । ମୁଁ ତୋହର ପତ୍ରରେ ପଡ଼ିଛି ବସୁଛି । ଗୋପାଳ ଉତ୍ତର ଦେଲା— ମୁଁ ତ ସେଇଆ କହୁଛି । ଆପଣ ରାନ୍ଧିଛନ୍ତି ଆପଣ ବାଢ଼ିଛନ୍ତି ; ଏଥିରେ ପୁଣି ପାତର ଅନ୍ତର କ'ଣ ଅଛି ଯେ ଆପଣ ରାଗି ଯାଉଛନ୍ତି ।

ଗୁରୁ ବଡ଼ରା କଣ କରିବେ, ଶେଷରେ କାନମୁଣ୍ଡା ଆଉଁଷି ଗୋପାଳ ପତ୍ରରେ ବସିଲେ । ମନେ ମନେ ଭାବୁଥାନ୍ତି ମୁଁ ଶଳାଟି ହାତ ଧୋଇବାକୁ କାହିଁକି ଗଲି । ଆଉ କ'ଣ ମୋ ଭାଗ୍ୟରେ ଏପରି ମାଛ ମିଳିବ ? ଏଣେ ଗୋପାଳ ଗୋଟାଏ ପରେ ଗୋଟାଏ ମାଛ ଟାକରା ମାରି ଖାଉଥାଏ, କେବେକେବେ ଗୁରୁଙ୍କୁ ଚିଡ଼ାଇବା ପାଇଁ କହି ହେଉଥାଏ ଗୋସାଇଁ ତରକାରିଟି ବଡ଼ ବଢ଼ିଆ ହୋଇଛି ; କିନ୍ତୁ ତୁମେ ମନେରଖ, ତୁମେ ଅନେକଙ୍କ ଗୁରୁ ହୋଇଛ । ମୁଁ ଆପଣଙ୍କର ଗୁରୁ ହୋଇ ଉପଦେଶ ଦେଉଛି, ତୁମେ ଆଉ କୌଣସି ଭଲ ଖାଦ୍ୟ ପଦାର୍ଥକୁ ପାତର ଅନ୍ତର କରିବ ନାହିଁ ।

—*—

# ହଗିଲେ ମୂତିବ ନାହିଁ

ସଭା ବସିଥିବା ବେଳେ ରାଜା କୃଷ୍ଣଚନ୍ଦ୍ର କହୁ କହୁ କହି-ପକାଇଲେ ଯେ ଦେଖ ଗୋପାଳ । ସବୁବେଳେ ପ୍ରତ୍ୟେକ କଥାରେ ସମସ୍ତଙ୍କୁ ଠକାଉଛୁ; କିନ୍ତୁ ଆମ୍ଭେମାନେ କେତେବେଳେ ଥରେମାତ୍ର ତୁମକୁ ଠକାଇ ପାରିଲେ ନାହିଁ; ତେଣୁ ମୁଁ ଗୋଟିଏ ଉପାୟ ଭାବିଛି—ତୁମ ମଧ୍ୟରୁ ତିନି ଚାରିଜଣ ତାର ନୂଆଘର ଦେଖିବା ବାହାନାରେ ଯାଇ ତାର ଚୁଲିରେ ହଗିଦେଇ ଆସ । ତେବେ ଯାଇ ସେ ଜବତ ହେବ । ସଭାଲୋକେ ମଧ୍ୟ ଗୋପାଳ କଥାରେ ଆଗରୁ ବହୁତ ଚିଡ଼ି ଯାଇଛନ୍ତି ଏବଂ ଅପମାନିତ ମଧ୍ୟ ହୋଇଛନ୍ତି; ତେଣୁ ରାଜାଙ୍କ ମୁହଁରୁ କଥା ନ ସରୁଣୁ ତିନି ଚାରି ଜଣ ଲୋକ କହିପକାଇଲେ—ଆମେ ଯାଉଛୁ ଆଜ୍ଞା ! ରାଜା କହିଲେ—ହଉ ଯାଅ । ଯେପରି କୌଣସି ଅସୁବିଧା ନହୁଏ । ଅସୁବିଧା ହେଲେ ଗୋପାଳ ନିଶ୍ଚୟ ଜାଣିବ ।

ଆଜ୍ଞା, ଆଜ୍ଞା; କହି ତିନି ଚାରିଜଣ ଲୋକ ଗୋପାଳ ଘରକୁ ଗଲେ । ଗୋପାଳର ଘରେ ପହଞ୍ଚିବାରୁ ଗୋପାଳ ସେମାନଙ୍କୁ ପ୍ରସନ୍ନମନେ ପଚାରିଲା; ତୁମ୍ଭେମାନେ କାହିଁକି ଆସିଛ ? ସେମାନେ ଏକା ସଙ୍ଗରେ କହିଉଠିଲେ—ଆମ୍ଭେମାନେ ତୁମ ନୂଆଘର ଦେଖିବାକୁ ଆସିଛୁ । ଗୋପାଳ ଆନନ୍ଦରେ ସେମାନଙ୍କ ନୂଆଘର ଦେଖାଇବା ଉଦ୍ଦେଶ୍ୟରେ ନେଇଗଲା । ଘରେ ଦେଖୁଥିବା ସମୟରେ ତନ୍ମଧ୍ୟରୁ ଜଣେ ତାର ପେଟଟାକୁ ମୁଠାଇ ଧରି କହିଲା—ଓହୋ ମୋତେ ବଡ଼ ଝାଡ଼ା ଚଳିବ ଦେଖାଇଲାଣି । ମୁଁ କ'ଣ କରିବି, କେଉଁଠି ଝାଡ଼ା ଫେରିବି ? ଆଗରୁ ତ ସେମାନେ

ସେହି ଉଦ୍ଦେଶ୍ୟରେ ଆସିଥିଲେ ; ତେଣୁ ତା'ପରେ ଆଉ ଜଣେ କହିଉଠିଲା ମୋର ମଧ ପେଟ କାଟୁଛି । ବର୍ତ୍ତମାନ ଝାଡ଼ା ନ ବସିଲେ ଲୁଗାପଟା ଖରାପ କରିପକାଇବ । ଏହିପରି ଜଣକ ପରେ ଜଣେ କହିବାରୁ ଗୋପାଳର ସନ୍ଦେହ ହେବାରୁ ଉପରେ ଉପରେ ଭଦ୍ରାମି ଫୁଟାଇ କହିଲା, ମୋ ସହିତ ଆସ, କେଉଁଠି ଝାଡ଼ା ଫେରିବ ମୁଁ କହିଦେବି । ଲୋକମାନେ ହସି ହସି ବେଦମ୍ ହୋଇ-ଗଲେ ଏବଂ କହିଲେ—

ଆମେ କୁଆଡ଼େ ଯିବୁ ନାହିଁ । ରାଜାଙ୍କ ହୁକୁମ, ତୁମର ନୂଆଘର ଚୂଲାରେ ହଗିବୁ । ଗୋପାଳ ଏତେବେଳକରେ ସମସ୍ତ ବୁଝିପାରି ହାତରେ ଗୋଟିଏ ବାଡ଼ିଧରି କହିଲା, ରାଜାଙ୍କ ହୁକୁମ ମୋର ଶିରୋଧାର୍ଯ୍ୟ; କିନ୍ତୁ ଗୋଟିଏ କଥା ତୁମ୍ଭେମାନେ ରାଜାଙ୍କ ଅନ୍ନ ଖାଉଛ । ତୁମ୍ଭେମାନେ ତାଙ୍କର ହୁକୁମ ମାନିବ ଠିକ୍‌କଥା, ଯଦି ସେହି କଥାରୁ ଟିକିଏ ବାହାର ହୁଅ ତା'ହେଲେ ତୁମର ମୋର କଥାବାର୍ତ୍ତା । ଗୋପାଳର କଥା ଶୁଣି ସେମାନେ ଉତ୍ତର ଦେଲେ —ରାଜାଙ୍କର ହୁକୁମରେ ହଗିବୁ ତ ଆଉ ବାହାର ହେବୁ କିଆଁଣ ?

ଗୋପାଳ ଟିକିଏ ଉପରେ ଉପରେ ରାଗିଯାଇ କହିଲା—ମୁଁ ତ ସେଇଆ କହୁଛି, ରାଜାଙ୍କ ହୁକୁମରେ ତୁମେ ହଗିପାର, ମୋର ମନା ନାହିଁ ; କିନ୍ତୁ ହଗିବା ଛଡ଼ା ଯଦି ମୁତ, ତା'ହେଲେ ମୋର ତୁମ ସହିତ କଥାବାର୍ତ୍ତା ହେବ । ଏକଥା ଶୁଣି ସେ ଚାରିଜଣଙ୍କର ବୁଦ୍ଧି ଅକଲ ସବୁ ଗୁଡ଼ୁମ୍ ହୋଇଗଲା । ସେମାନେ ମନେ ମନେ ଭାବିଲେ—ରାଜା ତ ଆମକୁ ହଗିବା ଛଡ଼ା ମୁତିବା କଥା ନାହାନ୍ତି । ତାଙ୍କ କହିବା ଅନୁସାରେ ହଗିଲେ ମୁତିବାକୁ ହେବ । ମୁତିଲେ

ଗୋପାଳ ହାତରୁ ରକ୍ଷା ପାଇବା ନାହିଁ । ମୁହଁରେ ଯାହା କହୁଛି, ତା' ମଧ୍ୟ କାମରେ ଦେଖାଇ ଦେବ । ଆମର ହଗିବା ଦରକାର ନାହିଁ, ଚାଲ ରଜାଙ୍କୁ ଏକଥା କହିବା ।

ସେମାନେ ଏହିପରି ଭାବ ନୂଆଘର ଦେଖିବା ବନ୍ଦ କରି ପଡାକୁ ବାହାରିଯାଇ ଦୌଡ଼ିଲେ । ଗୋପାଳ ମଧ୍ୟ ତାଙ୍କ ପଛେ ପଛେ ଠେଙ୍ଗା ଉଞ୍ଚାଇ ଉଞ୍ଚାଇ ଦୌଡ଼ି ଦୌଡ଼ି କହୁଥାଏ—

ବେଇମାନ ରଜାଙ୍କ ହୁକୁମକୁ ନମାନି ତୁମେ କୁଆଡ଼େ ଯାଉଛ, ଚାଲ ଆଜ ଏ ଠେଙ୍ଗାରୁ ତୁମେ ରକ୍ଷା ପାଇବ ନାହିଁ । ଆଜ ଏ ଠେଙ୍ଗା ଯାଉ, ନଚେତ୍ ତୁମ ମୁଣ୍ଡ ଯାଉ । ଗୋପାଳର କଥା ଶୁଣି ଆଗ ଅପେକ୍ଷା ଆହୁରି ଜୋରରେ ଦୌଡ଼ି ଦୌଡ଼ି ଯାଇ ରାଜାଙ୍କ ପାଖରେ ପହଞ୍ଚିଲେ । ତାଙ୍କ ପଛରେ ଗୋପାଳ ମଧ୍ୟ ଠେଙ୍ଗାଧରି ଯାଇ ରାଜାଙ୍କ ପାଖରେ ପହଞ୍ଚିଲା । ରଜା ଏହାର କାରଣ ପଚାରି-ବାରୁ ଗୋପାଳ କହିଲା—ଆଜ୍ଞା ! ଆପଣଙ୍କ ଆଜ୍ଞାକୁ ଅବଜ୍ଞା କରିଛନ୍ତି ଏମାନେ । ଆପଣ କହିଲେ ମୋର ଚୁଲିରେ ହଗିବା ପାଇଁ, ମୁଁ ମୂତିବାକୁ ମନା କରିବାରୁ ସେମାନେ ବେଇମାନ ହୋଇ ପଳାଇ ଆସିଛନ୍ତି । ରଜାଙ୍କର ହୁକୁମ ଆଉ ରହିଲା କେଉଁଠି ? ଏକଥା ଶୁଣି ଗୋପାଳ ବୁଦ୍ଧିକୁ ପ୍ରଶଂସା କଲେ ଏବଂ ବହୁତ ଧନରତ୍ନ ଦେଲେ ।



## ଆମ୍ବ, ଆମ୍ବଡ଼ା ଓ ବଉଳ

ରଜା ଏକଦା ପଚାରିଲେ ସଭାରେ ଥିବା ପଣ୍ଡିତମାନଙ୍କୁ— ଆମ୍ବ ଆମ୍ବଡ଼ା ଦୁଇଟି ଗଛ । ହେଲେ ମଧ୍ୟ ଦୁହିଁଙ୍କର ବଉଳ

ଏକା ସାଙ୍ଗରେ ମୁକୁଳିତ ହୁଏ ; କିନ୍ତୁ କୁହୁଡ଼ି ଆମ୍ବ ବଉଳକୁ ପୋଡ଼ିଦିଏ, ଆମ୍ବଡ଼ା ବଉଳକୁ ପୋଡ଼ି ଦିଏନା କାହିଁକି ? ଏହାର କାରଣ କେହି ଜାଣିଛ, କୁହ । ହଠାତ୍ ରାଜାଙ୍କର ଏପରି ପ୍ରଶ୍ନ ଶୁଣି ପଣ୍ଡିତମାନେ ପରସ୍ପରକୁ ଅନାଉ ଥାଆନ୍ତି । କିଛି ବୁଦ୍ଧି କାହାରି ମୁଣ୍ଡରେ ଖେଳୁ ନଥାଏ । ନ୍ୟାୟରତ୍ନ, ବାଣୀଭୂଷଣ, ତର୍କାଳଙ୍କାର ବିଦ୍ୟାଭୂଷଣ ଜ୍ଞାନରତ୍ନ, ଜ୍ଞାନେନ୍ଦ୍ର ଏମାନଙ୍କର ବୁଦ୍ଧି ନ ଆସିବାରୁ ଆପଣା ଆପଣା ମଧ୍ୟରେ ଭାବ ହେଉଛନ୍ତି । ସେହି ସମୟରେ ଗୋପାଳ ଭଣ୍ଡ ମହାରାଜାଙ୍କର ଜୟଗାନ କରି ସଭାରେ ଉପସ୍ଥିତ ହେଲେ । ଅନ୍ୟଦିନ ପରି ସଭାଟିରେ ହାସ୍ୟରସ ଆଲୋଚନା ନ ଦେଖି ମନେ ମନେ ଭାବିଲେ—ଆଜି ଏସବୁ କି ବିପଦ ପଡ଼ିଲା ଯେ ସମସ୍ତେ ଚିନ୍ତାମଗ୍ନ ହୋଇ ବସିଛନ୍ତି । ଯାହାହେଉ କଥାଟା ପଚାରିବି । ନ ପଚାରିଲେ କିଛି ହେବ ନାହିଁ ।

ଗୋପାଳ ଏହିପରି ଭାବି ଦୁଇ ହାତ ଯୋଡ଼ି ବିନମ୍ର ସ୍ୱରରେ କହିଲେ—ମହାରାଜା ! ସମସ୍ତଙ୍କୁ ଚିନ୍ତାମଗ୍ନ ଦେଖୁଛି । ଆପଣ ମଧ୍ୟ କୌଣସି କଥାକୁ ଅପେକ୍ଷା କଲାଭଳି ଜଣା ପଡ଼ୁଅଛି । କି ଦୁର୍ଦ୍ଦଶା ଘଟିଛି କୁହନ୍ତୁ ତ ? ଏ କଥା ଶୁଣି ରାଜା କହିଲେ—ଗୋପାଳ ! ଗୋଟିଏ ପ୍ରଶ୍ନ ପଚାରି ମୁଁ ତା'ର ଉତ୍ତର ଅପେକ୍ଷାରେ ବସିଛି । ଗୋପାଳ ପୁଣି ପଚାରିଲେ କି ପ୍ରଶ୍ନ ମହାରାଜା ? କୁହନ୍ତୁ । ରାଜା ଉତ୍ତର ଦେଲେ, ତାହା ଶୁଣି ତୁମର କୌଣସି ଲାଭ ହେବ ନାହିଁ ଗୋପାଳ ! ତୁମର ଭଣ୍ଡ ପଣିଆ ପ୍ରଶ୍ନ ଏ ନୁହେଁ । ଏ ହେଉଛି ଶାସ୍ତ୍ର କଥା । ତୁମେ କାହିଁକି ବା ଶୁଣିବ ? ରାଜାଙ୍କର କଥା ଶୁଣି ଗୋପାଳ ଟିକେ ରହି ଯାଇ ପୁଣି କହିଲେ—ମହାରାଜ ! ଦୟାକରି ସେ ପ୍ରଶ୍ନଟି ଥରେ କହିଲେ କ'ଣ ଦୋଷ ହୋଇଯିବ ? ରାଜା

ଗୋପାଳର ଆଗ୍ରହ ଦେଖି ଉକ୍ତ ଆମ୍ବ ଆମ୍ବଡ଼ା ଓ କଉଳ କଥା କହିଲେ । ତାହା ଶୁଣି ଗୋପାଳ ହସି ହସି କହିଲା ଏ ଗୋଟିଏ କୋଉ କଥାରେ କଥା ଯେ ଆପଣଙ୍କ ଜ୍ଞାନମୟ ପଣ୍ଡିତମାନେ ଚନ୍ତାରେ ବୁଡ଼ ଉବୁଟ ବୁ ହେଲେଣି । ହଁ ହେବେ ତ, ଯେ ରାଜାଙ୍କ ଭଣ୍ଡାରରୁ ଠକକରି ଖାଉଥାଏ, ସେ ପୁଣି ଠକଯାଏ । ଏ ତ ପୁଣି ଗୋଟିଏ ଶାସ୍ତ୍ରର କଥା । ଏକଥା ଶୁଣି ରାଜା କହିଲେ; ଗୋପାଳ ତୁମର ଏଭଳି କଥା କହିବା ଉଚିତ୍ ହେଉନ । ଯେ ଉତ୍ତର ଦିଏ, ସେ କହେ ! ତୁମ କ'ଣ ପ୍ରଶ୍ନର ଉତ୍ତର ହେଇ ପାରିବ ଯେ ଏପରି କଥା କହୁଛ ?

ତାଙ୍କର କଥା ଶୁଣି ଗୋପାଳ ଟିକେ ଥଟ୍ଟା କରି କହିଲା— ମହାରାଜ ! ଏ ପ୍ରଶ୍ନର ଉତ୍ତର ଏ ଗଣେଶପେଟା ପଣ୍ଡିତମାନେ କହିପାରିଲେ ନାହିଁ ବୋଲି କ'ଣ ମୁଁ କହିପାରିବି ନାହିଁ ? ଏହି ଶୁଣନ୍ତୁ—କୁହୁଡ଼ି ସୃଷ୍ଟି କାହିଁକି ହୋଇଥିଲା । କୁହୁଡ଼ି ସୃଷ୍ଟି ହୋଇଥିଲା ଆମ୍ଭମାନଙ୍କୁ ନଷ୍ଟ କରିବା ସକାଶେ, କାରଣ ଯେତେବେଳେ ପରାଶର ଋଷି ମତ୍ସ୍ୟଗନ୍ଧା ସହିତ ସହବାସ କରିବା ଆଶାରେ ନଦୀ ମଧ୍ୟ ଦ୍ୱୀପ (ଟାପୁ) ସୃଜନ କରିଥିଲେ ସେତେବେଳେ ଧୀବର କନ୍ୟା ମୁନିଙ୍କୁ କହିଲେ—ଦିନବେଳେ ଉକ୍ତବାସ ଦେଖିଲେ ବିଶେଷ ଲାଜ ହେବ । ସେଥିପାଇଁ ପରାଶର ମୁନି ଯୋଗବଳରେ ଲଜ୍ଜା ନିବାରଣ ସକାଶେ ସେହି କୁହୁଡ଼ିକୁ ସୃଷ୍ଟି କରିଥିଲେ । ଏହି କାରଣରୁ କୁହୁଡ଼ିରେ ଆମ୍ବଡ଼ା କଉଳ ନଷ୍ଟ ନ ହୋଇ ଆମ୍ବ କଉଳ ନଷ୍ଟ ହୋଇଯାଏ । ଏହି ତ ଆପଣଙ୍କର ପ୍ରଶ୍ନର ଉତ୍ତର ମହାରାଜା ! ଗୋପାଳର ଏହିପରି ବୁଦ୍ଧି ଓ

ଚାତୁର୍ଯ୍ୟତା ଦେଖି ସଭାସ୍ଥ ପଣ୍ଡିତମାନେ ଆଶ୍ଚର୍ଯ୍ୟ ହୋଇ ଧନ୍ୟ ଧନ୍ୟ କଲେ ଏବଂ ରାଜା ଆଶାତୀତ ଧନ ଦେଇ ବିଦା କଲେ ।



## ଗୋପାଳ ଭଣ୍ଡର ରୋଷେଇ

ମାଘ ମାସର ହାଡ଼ ଭଙ୍ଗା ଶୀତ । ସେହି ଶୀତରେ ରାଜା କୃଷ୍ଣଚନ୍ଦ୍ର ଦେହସାରା ଗରମ ପରିଚ୍ଛଦରେ ଆବୃତ ହୋଇ ସଭାରେ କହି କହିଲେ—ଆମ୍ଭେମାନେ ତ ଶାଲ କମ୍ବଳରେ ଆବୃତ ହୋଇ ଶୀତ ବାଉରୁ ରକ୍ଷା ପାଉ ନ ଥାଉଁ ; ମାତ୍ର ଯେଉଁମାନେ ଗରିବ ଯାହାଙ୍କର ଲୁଗାପଟା ଅଭାବ, ସେମାନେ କପର ଚଳୁଛନ୍ତି ।

ରାଜାଙ୍କର କଥା ଶୁଣି ସଭା ମଧ୍ୟରେ ଜଣେ ସଦସ୍ୟ କହିଲେ, ମହାରାଜ ! ଗରିବ ଲୋକଙ୍କୁ ଶୀତ ହୁଏନା । ଯେ ବଡ଼ଲୋକ ଯେଉଁମାନଙ୍କର ଲୁଗାପଟା ଅଛି, ସେମାନଙ୍କ ପ୍ରତି ସମସ୍ତ ବିସ୍ତାର କରିବସେ । ଏ କଥା ଶୁଣି ରାଜା ହସି ହସି କହିଲେ—ଯଦି ବଡ଼ଲୋକ ଛଡ଼ା ଗରିବକୁ ଶୀତ ହୁଏନା, ତେବେ ମୁଁ କହୁଛି ଆମ ପୋଖରୀରେ ଯେଉଁ ଲୋକ ରାତିସାରା ପାଣିରେ ପଶି ରହିବ ମୁଁ ତାକୁ ଏହେ ଟଙ୍କା ପୁରସ୍କାର ଦେବି । ରାଜାଙ୍କ ପାଟିରୁ କଥା ସରିରୁ କି ନାହିଁ, ଜଣେ ଗରିବ ବ୍ରାହ୍ମଣ ଛିଡ଼ାହୋଇ କହିଲା—ପ୍ରଭୁ ! ମୁଁ ରାତିସାରା ପାଣିରେ ଛିଡ଼ା ହୋଇ ରହିବି । ଏକଥା ଶୁଣି ରାଜା କହିଲେ, ଦେଖ ବ୍ରାହ୍ମଣ ! ଶାସ୍ତ୍ର କହୁଛି—"ଲୋଭରୁ ପାପ, ପାପରୁ ମୃତ୍ୟୁ ।" ତୁମେ ଧନ ଲୋଭରୁ ମୃତ୍ୟୁକୁ ବରଣ କରୁଛ କାହିଁକି ?

ରାଜା ବ୍ରାହ୍ମଣକୁ ଏହିପରି ଯେତେ ବୁଝାଇଲେ, ସେ କୌଣସି ପ୍ରକାରରେ ବୁଝିଲା ନାହିଁ । ସନ୍ଧ୍ୟାବେଳୁ ସକାଳ ଯାଏ ପୋଖରୀରେ ପଶି ରହିବାକୁବାହାରିଗଲା । ତା'ର ଯିବା ଦେଖି ରାଜା ସେଠି ପାଞ୍ଚ ଜଣ ପାଇକ ଜଗି ରହିବା ପାଇଁ ବନ୍ଦୋବସ୍ତ କରିଦେଲେ ।

ସନ୍ଧ୍ୟା ହେବାରୁ ବ୍ରାହ୍ମଣ ପୋଖରୀରେ ପଶି ବେକେ ପାଣିରେ ଛିଡ଼ାହେଲା । କେବଳ ମନକୁ ଦୃଢ଼କରି ରାଜପ୍ରାସାଦରେ ଜଳୁଥିବା ଆଲୁଅକୁ ଲକ୍ଷ୍ୟକରି ଈଶ୍ବରଙ୍କୁ ସ୍ମରଣ କରୁଥାଏ । ଶୀତରେ ଥରିଗଲେ ସୁଦ୍ଧା ଥଣ୍ଡା ଲୋଭରେ ଦେହ ତା'ର ଗରମ ହୋଇ ଯାଉଥାଏ । ଉପରେ ପ୍ରହରୀମାନେ ଜଗିଥାନ୍ତି । ଏହିପରି ଦୁଃଖ କଷ୍ଟରେ କାଳ ରାତିଟି ଯାହିଗଲା । ପ୍ରଭାତରୁ ବ୍ରାହ୍ମଣଟି ଥରି ଥରି ଯାଇ ରାଜାଙ୍କୁ ପୁରସ୍କାର ମାଗନ୍ତେ ରାଜା ନ କହୁଣୁ ନାଏବ କହିଲେ—ଗୋସାଇଁ ! ଆପଣ ରାତିଯାକ ପାଣିରେ ଛିଡ଼ା ହୋଇ-ଥିଲେ ବୋଲି ପ୍ରମାଣ କ'ଣ ଅଛି ?

ବ୍ରାହ୍ମଣ ବଚରା କହିଲା—ଆଜ୍ଞା ! ପ୍ରହରୀମାନେ ମୋତେ ଜଗିଥିଲେ, ତାଙ୍କୁ ଧର୍ମତଃ ପଚାରନ୍ତୁ—ସେ କହିବେ, ପାଣିରେ ମୁଁ ରାତିସାରା ଛିଡ଼ା ହୋଇ ଈଶ୍ବରଙ୍କୁ ଧ୍ୟାନ ଧାରଣା କରି ପ୍ରାସାଦରେ ଜଳୁଥିବା ବୃହତ୍ ଆଲୋକ ପ୍ରତି ଦୃଷ୍ଟି ରଖିଥିଲି କି ନାହିଁ ।

ଏକଥା ଶୁଣି ମନ୍ତ୍ରୀ କହିଲେ—ତମେ ଆଲୋକ ପ୍ରତି ଦୃଷ୍ଟି ରଖିଥିବାରୁ ଶୀତକଷ୍ଟ ଅନୁଭବ କରି ପାରିଲ ନାହିଁ । ତୁମର ଦୃଷ୍ଟିଶକ୍ତି ଆଲୋକ ଶକ୍ତିକୁ ଆକର୍ଷଣ କରିବାରୁ ଦେହ ତୁମର ଗରମ ହୋଇଗଲା ; ତେଣୁ ତୁମେ ନ୍ୟାୟୋଚିତରେ ଥଙ୍କା ପାଇପାରିବ ନାହିଁ । ରାଜା ମଧ୍ୟ ତହିଁରେ ଏକମତ ହେଲେ । ବ୍ରାହ୍ମଣ

ଝଡ଼ପ ନିସ୍ୱ ହୋଇ ଦୁଃଖକଷ୍ଟରେ କାନ୍ଦ କାନ୍ଦ ଘରକୁ ଫେରିଲା । ବାଟରେ ଗୋପାଳ ଦେଖି ଅଜ୍ଞାନ ହୋଇ ପଡ଼ିଲା । ଭଣ୍ଡ ତାକୁ ଚେତା କରାଇ ଘଟଣା ପଚାରିବାରୁ ବ୍ରାହ୍ମଣ ସମସ୍ତ କହିଲା । ଭଣ୍ଡ ତାକୁ ସାନ୍ତ୍ୱନା ଦେଇ କହିଲା—ତୁମେ ମୋତେ ଆଶୀର୍ବାଦ କରି ଘରକୁ ଯାଅ । ମୁଁ ନିଶ୍ଚୟ ରାଜାଙ୍କଠାରୁ ଟଙ୍କା ଆଦାୟ କରିଦେବି । ଏ କଥା ଶୁଣି ବ୍ରାହ୍ମଣ ଝଡ଼ପ ଗୋପାଳ ମୁଣ୍ଡରେ କଲ୍ୟାଣ କଳସୀ ଢାଳିଦେଇ ଘରକୁ ଗଲା ।

ପରଦିନ ନବାବଙ୍କ ମନ୍ତ୍ରୀ ଆସି ରାଜସଭାରେ ପହଞ୍ଚିଲେ । ତାଙ୍କୁ ଅଭ୍ୟର୍ଥନା କରିବାପାଇଁ ଗୋପାଳକୁ ନିଯୁକ୍ତ କଲେ । ସେ ସେତିକିବେଳେ ଉଠି ଘରକୁ ଚାଲିଗଲା । ଅଗଣାରେ ଗୋଟିଏ ବାଉଁଶ ପୋତି ତା ଆଗରେ ଅଟିକାଟିଏ ବାନ୍ଧି ତଳେ ନିଆଁ ଜାଳିଲା । ଭଣ୍ଡ ଫେରିବାର ଡେରି ଦେଖି ରାଜା ଡକାଇ ପଠାଇଲେ । ଲୋକ ଆସି ତାକୁ ଡାକନ୍ତେ ସେ କହିଲା—ତୁ ଯାଇ ରାଜାଙ୍କୁ କହ, ମୁଁ ଭାତ ରାନ୍ଧୁଛି । ଭାତ ହେଲେ ଖାଇସାରି ଯିବି । ଲୋକଟି ଯାଇ ରାଜାଙ୍କୁ ଭାତ ରାନ୍ଧିବା କଥା କହିଲା । ରାଜା ମିଥ୍ୟା ବୁଝି ପାତ୍ରମନ୍ତ୍ରୀଙ୍କୁ ସଙ୍ଗରେ ନେଇ ସତ୍ୟ ମିଥ୍ୟା ବୁଝିବା ପାଇଁ ଆସିଲେ । ସେତେ-ବେଳକୁ ଭଣ୍ଡ ବାଉଁଶ ତଳେ ନିଆଁ ଜାଳୁଥାଏ । ରାଜା ଏସବୁ ଦେଖି ଟିକିଏ ବିରକ୍ତ ହୋଇ କହିଲେ—ଗୋପାଳ ! ତୁମେ କ'ଣ କରୁଛ ? ସେ ହାତଯୋଡ଼ି କହିଲା—ଆଜ୍ଞା ! ଭାତ ରାନ୍ଧୁଛି, ଭାତ ହେଲେ ଖାଇସାରି ଯିବି । ରାଜା ପଚାରିଲେ—ଭାତ କାହିଁ ? ଭଣ୍ଡ କହିଲା—ହଇ, ବାଉଁଶ ଅଗରେ ଅଛି—ମୁଁ ତଳେ ନିଆଁ ଜାଳୁଛି ।

ଭଣ୍ଡର କଥା ଶୁଣି ରାଜା ହସି ହସି କହିଲେ—ତୁମେ କ'ଣ ପାଗଳ ହୋଇଯାଇଛ ଗୋପାଳ ? ହାଣ୍ଡି ବାଉଁଶ ଉପରେ ତୁମେ ଡଳେ ନିଆଁ ଜାଳୁଛ ? ସେଠୁ ନିଆଁ ତାତି ଯାଇ କିପରି ଗୁଳକ ଫୁଟିବ ? ଏହା ଶୁଣି ଭଣ୍ଡ କହିଲା—ମହାରାଜ ପୋଖରୀ କୂଳ ପ୍ରାସାଦ ଆଲୁଅଠାରୁ ଏ ତ ବେଶିଦୂର ନୁହେଁ । ଆକର୍ଷଣ ଶକ୍ତିରେ ଯେପରି ବ୍ରାହ୍ମଣ ଦେହ ତାତି ଗରମ ହୋଇଗଲା, ଏ ମଧ୍ୟ ସେହିପରି ହୋଇଯିବ । ରାଜା ଗୋପାଳର ଅଭିପ୍ରାୟ ବୁଝିପାରି କହିଲେ, ମୋତେ ଆଜ ଲଜ୍ଜା ଦିଅନା ଭଣ୍ଡେ । ତୁମେ ନବାବ ମନ୍ତ୍ରୀଙ୍କ ପାଖକୁ ଯାଅ । ମୁଁ ବ୍ରାହ୍ମଣକୁ ଡାକି ଟଙ୍କା ଦେଉଛି ।

ଏହାଶୁଣି ଗୋପାଳ ସିଧାସଳଖ ମନ୍ତ୍ରୀଙ୍କ ପାଖକୁ ଯାଇ ଅଭ୍ୟର୍ଥନା କଲା । ରାଜା ବ୍ରାହ୍ମଣକୁ ଡାକି ଶହେ ଟଙ୍କା ସ୍ଥଳେ ଦୁଇଶହ ଟଙ୍କା ଦେଲେ ।

---

## ଗୋପାଳର ଚଣ୍ଡୀପାଠ

ରାଜା ତ ସବୁବେଳେ ରାଜକାର୍ଯ୍ୟରେ ରତ ଥାଆନ୍ତି । ସେହିପରି ରାଜା କୃଷ୍ଣଚନ୍ଦ୍ର ମଧ୍ୟ ସବୁବେଳେ ରାଜକାର୍ଯ୍ୟରେ ଲିପ୍ତ ରହି କୌଣସି ଧର୍ମ ଆଲୋଚନା କିମ୍ବା ଧର୍ମକାର୍ଯ୍ୟ ବିଶେଷଭାବେ କରି ପାରନ୍ତି ନାହିଁ । ଏକଦା ତାଙ୍କର ଦୁର୍ଗାଙ୍କର ଚଣ୍ଡୀପାଠ ଶୁଣିବାକୁ ଇଚ୍ଛା ହେଲା, ତେଣୁ ରାଜସଭାରେ ଥିବା ପଣ୍ଡିତମାନେ ରାଜାଙ୍କ ଆଦେଶରେ ଚଣ୍ଡୀପାଠ ଆରମ୍ଭ କଲେ । ଖୁବ୍ ସୁନ୍ଦର ଭାବେ ଚଣ୍ଡୀପାଠ କରୁଥାଆନ୍ତି । ଏହି ସମୟରେ ଗୋପାଳ ଭଣ୍ଡ ଆସି

ପହଞ୍ଚିଲେ । ଏମାନଙ୍କୁ ଚଣ୍ଡୀପାଠ କରୁଥିବା ଦେଖି ଗୋପାଳ ବୁଲିପଡ଼ି ପଳାଇ ଯାଉଥିବା ସମୟରେ ରଜା ପଚାରିଲେ, କହୋ ଗୋପାଳ ! ତୁମେ ଆସି ଫେରିଯାଉଛ କ'ଣ ? ଗୋପାଳ କହିଲେ, ନାଇଁ ଆଜ୍ଞା ! ମୁଁ ଦେଖୁଥିଲି ।

ରଜା ପଚାରିଲେ—ତୁମେ ତ ଭଣ୍ଡାମି ଢଙ୍ଗରେ ଜଣଛ, କିନ୍ତୁ ଚଣ୍ଡୀପାଠ ଜାଣିଛ କି ? ଗୋପାଳ କହିଲେ—ହଁ ଆଜ୍ଞା । ପଣ୍ଡିତ ତ ପୋଥିଦେଖି ଚଣ୍ଡୀପାଠ କରୁଛନ୍ତି, କିନ୍ତୁ ମୁଁ ମୋ ମୁହଁରେ ସବୁ ଜାଣେ ! ପଣ୍ଡିତ ମାନେ ପୋଥିଘୁଞ୍ଚେଇ ଗୋପାଳଙ୍କୁ ଅନାଇଲେ । ଗୋପାଳ ଆତୁର କହିଲେ—ମୁଁ ନୂଆ ଚଣ୍ଡୀପାଠ ଗୋଟିଏ ଶିଖିଛି । ତାକୁ ପାଠ କଲେ କେଳା ଯେପରି ଗାରେଡ଼ି-ମନ୍ତ୍ର ବୋଲିଲେ ସାପ ସବୁ ଖୁଲି ଆସନ୍ତି, ସେହିପରି ମୋର ପାଠ ଶୁଣି ବହୁ ଲୋକ ଖୁଲିଆସିବେ । ବୋଲୁଛି ଶୁଣନ୍ତୁ—

ଜଂ ଜଂ ଜଂ ଜଗଚ୍ଚଣ୍ଡୀ ସ୍ୱାମୀଶିର ମଣ୍ଡିମା
ରଂ ରଂ ରଂ ରକ୍ତନେତ୍ରୀ ଶାଶୁ ରକ୍ତ ଶୋଷିମା ।
ସଂ ସଂ ସଂ ଶାଢ଼ୀ ଘୁଞ୍ଚ ଗାଉନ୍‌ରେ ଶୋଭିମା
ମଂ ମଂ ମଂ ମୁକ୍ତକେଶୀ କଟିଦେଶେ ଲମ୍ବିମା ।
ଚଂ ଚଂ ଚଂ ଚୂଡ଼ି କାଢ଼ି ରିଷ୍ଟୱାଚ୍ ବାନ୍ଧିମା
ବଂ ବଂ ବଂ ବଦନରେ ସ୍ନୋ ପାଉଡର ମାଖିମା ।
ହଂ ହଂ ହଂ ହାଇହିଲ୍ ଜୋତା ପାଦରେ ଶୋଭିମା
ପଂ ପଂ ପଂ ପ୍ରେମିକାର ହସ୍ତଧରି ଗାମିନୀ ।
କଂ କଂ କଂ କଞ୍ଚାଖାଇ ଗୃହେ କଳହ କାରଣୀ ।
ଏ ଯୁଗର ଚଣ୍ଡୀ ପାଦେ ସଦା କର ବନ୍ଦିମା ।

ଗୋପାଳର ଚଣ୍ଡୀପାଠ ଶୁଣି ପଣ୍ଡିତମାନେ ହସି ହସି ଅଧୀର ହୋଇଗଲେ । ଗୋପାଳ କହିଲା—ମହାରାଜା ! ଆପଣ ହସୁଛନ୍ତି କାହିଁକି ? ଏ ସବୁ ଆଧୁନିକ ଯୁଗ ଚଣ୍ଡୀପାଠ । ଏହାର ଲେଖକ ହେଉଛନ୍ତି ଶ୍ରୀ ଶ୍ରୀ ରାଜା କୃଷ୍ଣଚନ୍ଦ୍ରଙ୍କର ଭଣ୍ଡ ଗୋପାଳ ।



## ତୋ ବାବା ମୁଁ

କୌଣସି କାର୍ଯ୍ୟବଶତଃ କୃଷ୍ଣଚନ୍ଦ୍ର ତାଙ୍କର ମନ୍ତ୍ରୀ ଓ ଗୋପାଳ ଭଣ୍ଡ ସହିତ ବୁଲିବାକୁ ଯାଇଥିଲେ । ବୁଲିବା କାର୍ଯ୍ୟ ପରେ ପରେ ରାଜା କହିଲେ—ଚାଲ ଏବେ ଉଆସକୁ ଫେରିଯିବା । ରାଜା ମନ୍ତ୍ରୀ କୌଣସି ଆବଶ୍ୟକୀୟ କାର୍ଯ୍ୟ ନେଇ ଗୋପାଳ ତାଙ୍କ ସହିତ ନ ଆସି ଅନ୍ୟ ବାଟେ ଗଲା । ଯିବା ବାଟରେ ରାଜା ପୁଅ ମନ୍ତ୍ରୀ ପୁଅ ସହିତ ଗୋପାଳର ଭେଟ ହେଲା । ରାଜାପୁଅ ଗୋପାଳକୁ ହଠାତ୍ ଆସୁ ଥିବାର ଦେଖି ପଚାରିଲା—ତୁମେ କେଉଁଆଡ଼େ ଯାଇଥିଲ ଭଣ୍ଡ ? ଗୋପାଳ ଉତ୍ତର ଦେଲା—ବୁଲିବାକୁ ଯାଇଥିଲି ଯୁବରାଜ !

ରାଜପୁତ୍ର କହିଲେ—ତୁମେ ଏକା ଯାଇଥିଲ ନା ସଙ୍ଗରେ ଆଉ କିଏ ଯାଇଥିଲେ ? ଗୋପାଳ କହିଲା—ନା ଏକା ଯାଇ ନଥିଲି, (ମନ୍ତ୍ରୀ ପୁଅକୁ ଦେଖାଇ ଏଙ୍କ ବାବା ଓ ତୁମବାବା ମୁଁ ) ।

ଏ କଥା ଶୁଣି ରାଜାପୁଅ ରାଗିଯାଇ କହିଲେ—କ'ଣ କହିଲୁ ମୋ ବାବା ତୁ! ଆଚ୍ଛା ରହ ମୁଁ ଏହାର ପ୍ରତିଶୋଧ ନେଉଛି ।

ରାଜପୁତ୍ର ଏହାକହି ଅତ୍ୟନ୍ତ ଉଗ୍ରହୋଇ ରାଣୀଙ୍କ ପାଖରେ କହିଲେ । ରାଣୀ ପୁଅ ମୁହଁରୁ ଏ କଥା ପଦକ ଶୁଣି ରାଗରେ ତାତି ନିଆଁ ବାଣ ହୋଇଗଲେ । ସେ ଆଉ ରାଗକୁ ସମ୍ଭାଳି ନପାରି ସଙ୍ଗେ ସଙ୍ଗେ ରାଜାଙ୍କୁ ଯାଇ କହିଲେ—ଦେଖ ସ୍ୱାମୀ ! ଆଜି ଗୋପାଳର ଔଦ୍ଧତ୍ୟକୁ ନ ବୁଝିଲେ ଆମେ ମା, ପୁଅ ଦୁହେଁ ଉଆସ ଛାଡ଼ି ଚାଲିଯିବୁ । ରାଣୀଙ୍କର ରାଗକୁ ସାନ୍ତ୍ୱନା ଦେଇ ରାଜା କହିଲେ, କହ ତୁମର କ ଅପରାଧ କଲା ସେ ।

ରାଣୀ ମୁହଁଟାକୁ ବକୁଚ କରି କହିଲେ ତୁମେ ମୋର ପତି, ଦେବତା । ଏ ଶରୀରଟା ତୁମର । ତୁମେ ମୋ ପୁଅର ବାପା । ଗୋପାଳ ଗୋଟିଏ ସାମାନ୍ୟ ଭଣ୍ଡ ହୋଇ ସେ କହିଲା କାହିଁକି ତୋ ବାହା ମୁଁ ? ଗୋପାଳ ଯଦି ମୋ ପୁଅର ବାପା, ମୁଁ ଯଦି ତାର ସ୍ତ୍ରୀ ହୁଏ, ତୁମେ ଆଉ ମୋର କିଏ ? ଏ କଥା ବୁଝିବ ତ ବୁଝ ନୋହିଲେ ଆମେ ଚାଲିଯିବୁ ।

ଏକଥା ଶୁଣି ରାଜା କ୍ରୋଧରେ ପ୍ରଳୟ ଅଗ୍ନି ପରି ଜଳି ଉଠି ସଙ୍ଗେ ସଙ୍ଗେ ଗୋପାଳ ଭଣ୍ଡକୁ ଡାକି ପଚାରିଲେ—ଗୋପାଳ ! ତୁମେ ମୋ ପୁଅକୁ କ'ଣ କହିଲ ? ଗୋପାଳ ରାଜାଙ୍କର କ୍ରୋଧ ଦେଖି ଟିକିଏ ବିନମ୍ର ସ୍ୱରରେ କହିଲା—ନା ଆଜ୍ଞା ! ମୁଁ ଯୁବରାଜଙ୍କୁ କୌଣସି ଖରାପ କଥା କହିନି । ସେ ଯାହା ପଚାରିଲେ, ମୁଁ ତାହାର ଯଥାର୍ଥ ଉତ୍ତର ଦେଇଛି । ଗୋପାଳ ପାଟିରୁ କଥା ନସରୁଣୁ, ରାଣୀ କ୍ରୋଧରେ ଜଳିଉଠି କହିଲେ—ମୋ ପୁଅର ବାପ ତୁ ? ଏଇଟା ଯଥାର୍ଥ ଉତ୍ତର ?

ରାଣୀ ଏହା କହିବା ମାତ୍ରେ ଗୋପାଳ ନିକର ଜଉଣ୍ଟାକୁ କାମୁଡ଼ ପକାଇ କହିଲା—ରାଣୀ ମା ! ଆପଣ ରାଜାଙ୍କର ରାଣୀ, ମୁଁ ବା ଆପଣଙ୍କ ଚାକର, କୁକୁର । ଆପଣଙ୍କ ଦାନା ଖାଇ ମୋର ଏ ଶରୀର ବଢ଼ିଛି । ମୁଁ କଣ ଆପଣଙ୍କୁ ଏତେବଡ଼ କଥାଟେ କହିପାରେ ରାଣୀ ଉତ୍ତର ଦେଲେ, ତାହା ହେଲେ ମୋ ପୁଅ ମିଛୁଆ, କୁ ସ୍ୱଭୁଆ ସେ ତ କଦାପି ମିଛ କହିବ ନାହିଁ । ଏକଥା ଶୁଣି ଗୋପାଳ କ'ଣ ଚିନ୍ତାଏ ଭାବିନେଇ ହାତ ଯୋଡ଼ି କହିଲା ମହାରାଜ ! ଯେବେ ମୁଁ ଏତେବଡ଼ କଥାଟା ଯୁବରାଜଙ୍କୁ କହିଥିବି ତେବେ ଯୁବରାଜଙ୍କୁ ପଚାରନ୍ତୁ ସେ ମୋତେ କଣ କହିଲେ, ଓ ମୁଁ ତାଙ୍କୁ କଣ କହିଲି, ଏଥିରେ ମୋର ଦୋଷଥିଲେ ମୁଁ ଦଣ୍ଡିତ ହେବି । ଗୋପାଳର କଥାଶୁଣି ରାଜା ଯୁବରାଜଙ୍କୁ ଡାକି ପଚାରିଲେ—ସତ କହ, ଗୋପାଳ ତୋତେ କ'ଣ କହିଛି ?

ଯୁବରାଜ କହିଲେ—ମନ୍ତ୍ରୀ ପୁଅ ଓ ମୁଁ ଦୁହେଁ ଯାକ ଯାଉଥିବା ସମୟରେ ଗୋପାଳକୁ ଦେଖି ପଚାରିଲି, ଗୋପାଳ ! ତୁମେ କୁଆଡ଼େ ଯାଇଥିଲ ? ସେ ଉତ୍ତର ଦେଲା—ବୁଲିବାକୁ ଯାଇଥିଲି । ମୁଁ ପୁଣି ପଚାରିଲି—ତମେ ଏକା ବୁଲିବାକୁ ଯାଇଥିଲ, ନା ଆଉ କିଏ ଯାଇଥିଲେ ? ସେ ମନ୍ତ୍ରୀ ପୁଅକୁ ଲକ୍ଷ୍ୟକରି କହିଲା—ଯାଙ୍କ ବାବା ଓ ତୁମ ବାବା, ମୁଁ ।

ଯୁବରାଜଙ୍କ କଥାଶୁଣି ରାଜା କହିଲେ—ଗୋପାଳ ତୁମେ ଏହା କହିଛ ?

ଗୋପାଳ କହିଲା—ହଁ ଆଜ୍ଞା ! ମୁଁ ଏହାଛଡ଼ା ଅନ୍ୟ କିଛି କହି ନାହିଁ । ମୋତେ ପଚାରିବା ମାତ୍ରେ ମୁଁ ସତ କଥା କହିଛି ।

ଯାଙ୍କ ବାବା ଓ ତୁମ ବାବା ଆଉ ମୁଁ ଏଇ ତିନିଜଣ ବୁଲିବାକୁ ଆସିଥିଲୁ । ଏଥିରେ ମୋର ଦୋଷ କ'ଣ ?

ଏକଥା ଶୁଣି ରାଜା ରାଣୀଙ୍କର ମୁଖ ଚୁମ୍ବି ହସି ହସି କହିଲେ- ଶୁଣିଲ ତ ! କଥାଟାର ପ୍ରକୃତ ଅର୍ଥ ବୁଝି ନ ପାରି ତୁମେ ଯେ ରାଗର ସୀମା ଡେଇଁ ଯାଇଥିଲ । ଏଥିରେ ଭୁଲ୍ ହେଲା କାହାର ? ରାଜାଙ୍କ କଥା ଶୁଣି ରାଣୀ ଲାଜରେ ମୁହଁକୁ ଉପରକୁ ନ ଟେକି ଅନ୍ଦରକୁ ଚାଲିଗଲେ ।

*—

## ବୁଦ୍ଧିଦାତା ଗୋପାଳ

କୌଣସି କାରଣରୁ ରାଜା କୃଷ୍ଣଚନ୍ଦ୍ରଙ୍କର ବଗିଚାରେ ଗୋଟିଏ ଖାଲଥିଲା । ତେବେ ରାଜା ଦୁଇଜଣ ମାଳୀଙ୍କୁ ଡାକିଲେ ଏବଂ କହିଲେ, ତୁମ୍ଭେମାନେ ଏହି ଜାଗାଟିର ମାଟିନେଇ ସେଠାରେ ଯେଉଁ ଖାଲ ଅଛି ତାକୁ ପୋତିଦେଇ ସମାନ କରିଦିଅ । ବଗିଚାରେ ଯେପରି କୌଣସି ଖାଲ ନ ରହେ । ରାଜା ଏହାକହି ଚାଲିଗଲେ । ମାଳୀ ଦୁଇଟି ବଗିଚାରେ ମାଟି ଖାଲଟିକୁ ପୂରଣ କରିବାରେ ଲାଗିଲେ । ରାଜା ମାଳୀମାନଙ୍କୁ କାମ ବରାଦ କରୁଥିବା ବେଳେ, ଗୋପାଳ ସେପଟରେ ଥାଇ ସବୁ ଶୁଣୁଥାଏ ।

ରାଜା ଚାଲିଯିବାର କିଛି ସମୟ ପରେ ଗୋପାଳ ଯାଇ ସେ ବଗିଚା ମଧ୍ୟରେ ପହଞ୍ଚିଲା । ମାଳୀଦୁହେଁ ଗୋପାଳକୁ ଦେଖି ଜୁହାରି ହୋଇ ପଚାରିଲେ—ଗୋପାଳ ବାବୁ ! ରାଜା ତ ଆମ୍ଭମାନଙ୍କୁ

କହୁଥିଲେ ଯେ ଏହି ଜାଗାଟିରେ ଗାତକରି, ମାଟିନେଇ ସେ ଖାତଟି ପୋତି ସମାନ କରିବାକୁ, ସେ ଖାତଟି ପୂରିଗଲା । ପୁଣି ଏ ଯେଉଁ ନୂତନ ଖାତଟି ତିଆରି ହେଲା, ତାକୁ ପୂରାଇବା ପାଇଁ ମାଟି କେଉଁଠୁ ଆଣିବୁ ?

ମାଳୀଙ୍କର କଥା ଶୁଣି ଗୋପାଳ ରାଗିଯାଇ କହିଲା— ତୁମେ ତ ଦୁଇଟା ବିଲକୁଲ୍ ବୋକା ! ତୁମର ବୁଦ୍ଧି ଥିଲେ ରାଜାଙ୍କର କଥାକୁ ବୁଝି ପାରିଥାନ୍ତ ।

ଗୋପାଳ ରାଗ ଦେଖି ମାଳୀମାନେ ଡରିଯାଇ କହିଲେ— ଆଜ୍ଞା ! ଆମେ ତ ମୂର୍ଖଲୋକ । ରାଜାଙ୍କ କଥାକୁ ବୁଝିବୁ କେଉଁଠୁ ଯାହାହେଉ ଆପଣ ଆମକୁ ବୁଦ୍ଧି ନଦେଲେ ଆମେ ରାଜାଦେଶରେ ମରିବୁ । ଯଦି ଆପଣ ଆମକୁ ବୁଦ୍ଧି ଦିଅନ୍ତି, ତାହେଲେ ଆପଣଙ୍କର ଚିରଦିନ ପାଇଁ କୃତଜ୍ଞ ରହିବ । ବୁଦ୍ଧି ବତାଇଦେଲେ ରାଜାଙ୍କ କଥା ଅନୁସାରେ ଖାତଟି ପୋତି ମଜୁରି ନେବୁ ।

ମାଳୀଙ୍କର କାକୁତି ମିନତି କଥା ଶୁଣି ଗୋପାଳ କହିଲା— ଦେଖ୍ ତ ରାଜା ଯେତେବେଳେ ତୁମକୁ କହିଛନ୍ତି ଖାଲ ସମାନ କରିବାକୁ ତାହେଲେ ମୋ କଥା ମାନ ସମାନ କର । ଏଠୁ ମାଟି ନେଇ ଯେଉଁ ଖାଲକୁ ସମାନ କରିବ, ପୁଣି ସେଠୁ ମାଟି ଆଣି ଏ ଖାଲକୁ ପୋତ । ଏହିପରି କାମ ଦିନେ କ ଓଳିଏ କଲେ କଲେ ଦିନେ ଖାତ ପୋତି ହୋଇଯିବ । ତୁମ ଦୁଇଜଣଙ୍କର କାମଦେଖି ରାଜା ଖୁସି ହୋଇଯାଇ ତୁମକୁ ମଜୁରି ସହିତ ବକ୍‌ସିସ ଦେବେ ।

ଗୋପାଳ ଏହାକହି ଚାଲିଯିବାରୁ ମାଳୀ ଦୁହେଁ ତା କଥାକୁ ବିଶ୍ୱାସ କରି ଖାଲ କରିଥିବା ଜାଗାରେ ପୋତିଥିବା ମାଟିକୁ ଆଣି

ପକାଇଲେ । ଏ ଖାଲ ପୂରିପିବାରୁ ଏ ମାଟି ନେଇ ସେ ଖାଲରେ ପକାଇଲେ । ଏହିପରି କରିବାରୁ ଦିନଏ କଟିଗଲା । ଉପରଦିନ ରାଜା ଗୋପାଳ ଭଣ୍ଡକୁ ସଙ୍ଗରେ ନେଇ ମାଟିପୋତା ଦେଖିବାକୁ ଆସିଲେ । ସେତେବେଳକୁ ମାଳୀ ଦୁଇଜଣ କାମଗୁଡ଼ ଯାଇନଥାନ୍ତି ; ଏ ଖାଲ ମାଟି ସେ ଖାଲକୁ ସେ ଖାଲ ମାଟି ଏ ଖାଲକୁ ବୋହୁଥାଆନ୍ତି; କିନ୍ତୁ ଖାଲ ପୂରୁ ନଥାଏ ।

ରାଜା ସବୁ ଘଟଣା ଦେଖି ମାଳୀଙ୍କ ଉପରେ ବିରକ୍ତ ହୋଇ ପଚାରିଲେ—ଏ ସବୁ କ'ଣ କରୁଛ ? ମାଳୀ ଦୁହେଁ ହାତ ଯୋଡ଼ି କହିଲେ—ଆଜ୍ଞା ଖାଲକୁ ପୋତୁଛୁ । ରାଜା ଆହୁରି ରାଗିଯାଇ କହିଲେ—ମୁଁ ପରା କହିଥିଲି ସେ ଖାଲ ପୋତିବାକୁ । ତୁମେ ପୁଣି ସେଠୁ ମାଟିଆଣି ପକାଉଛ କାହିଁକି ? ତୁମକୁ ଏକଥା କହିଲା କିଏ ?

ରାଜାଙ୍କର କୋପଦେଖି ମାଳୀମାନେ ଡରି ଡରି ଉତ୍ତର ଦେଲେ ଏହି ଭଣ୍ଡେ କହିଲେ ଆଜ୍ଞା ! ସେମାନେ ସମସ୍ତ କଥା କହିଦେଲେ ।

ମାଳୀଙ୍କର କଥା ଶୁଣି ଭଣ୍ଡଙ୍କୁ ଚାହିଁ ରାଜା କହିଲେ-ଗୋପାଳ ! ତୁମେ ଏମାନଙ୍କୁ ପୋତିବା ଜାଗାରୁ ମାଟି ଆଣି ଖୋଳିବା ଜାଗାରେ ପକାଇବାକୁ କହିଛ ? ଭଣ୍ଡ ଉତ୍ତର ଦେଲା—ଆଉ କ'ଣ କରିଥାନ୍ତି ଆଜ୍ଞା ! ଆପଣ ତ ଖାଲଜାଗାକୁ ପୋତି ସମାନ କରିବାକୁ କହିଥିଲେ ସେ ଖାଲଟା ସମାନ ହେଲାପରେ, ଏମାନେ ମୋତେ ପଚାରିବାରୁ ମୋ ଆଖିକୁ ତ ଖାଲ କରିଥିବା ଜାଗାଛଡ଼ା ଆଉ କେଉଁଠି ଖାଲ୍ ଆ ଦେଖାଗଲାନି, ପୁଣି ସେଥିକୁ ପୋତିବାକୁ କହିଲି । ଏଥିରେ ମୋର ଭୁଲ୍ କ'ଣ ? ଲୋକ କହିଲାପରି ଆପଣ କଥାକୁ ଆପେ

ନଚଳି, ସରଗ ମାପୁଛୁ ଆଙ୍ଗୁଳ ଘେନ । ଏଥିରେ ମୁଁ ଅଧିକ ଆଉ କ'ଣ କହିବି ? ଆପଣ ଯାହା କହୁଥିଲେ; ମୁଁ ସେଇଆ କହିଲି ।

ଏକଥା ଶୁଣି ରାଜା ଗୋପାଳକୁ ଆଉ କିଛି ନକହି କାମବନ୍ଦ କରାଇଦେଇ ସେଠାରୁ ଚାଲିଗଲେ । ଗୋପାଳ ହସି ହସି ରାଜାଙ୍କ ପଛରେ ଚାଲିଗଲେ ।



## ଗୋପାଳର ବୁଦ୍ଧି ପରୀକ୍ଷା

ଏକଦିନେ ମହାରାଜ କୃଷ୍ଣଚନ୍ଦ୍ର ଭାଣ୍ଡର ବୁଦ୍ଧି ପରୀକ୍ଷା ସକାଶେ ନିଜର ଅଙ୍ଗୁଳିରୁ ସୁନା ମୁଦିଟିଏ କାଢ଼ି ତାଙ୍କର ଉଆସ ବାହାରେ ଥିବା କୂପ ମଧ୍ୟକୁ ପକାଇ ଦେଇ ଗୋପାଳକୁ କହିଲେ—ଏ କୂପ ମଧ୍ୟରୁ ମୋର ସୁନାମୁଦିଟି ବାହାର କରିଦେଲେ, ମୁଁ ତୁମକୁ ହଜାର ଟଙ୍କା ପୁରସ୍କାର ଦେବି । ଏହା ନ ପାରିଲେ ଏ ରାଜ୍ୟଛାଡ଼ି ଚାଲିଯିବାକୁ ହେବ ।

ଗୋପାଳ କହିଲା—ଛଡ଼ା କଥାରେ କଥା ଯେ, ଏଇଥିପାଇଁ ରାଜ୍ୟ ଛାଡ଼ି ଚାଲିଯିବି ? ଆପଣ ଏହିଠାରେ ଠିଆ ହୋଇ ଥାଆନ୍ତୁ ମୁଁ ଯାଉଛି କୂଅଭିତରେ ପଶି ପାଣିରେ ବୁଡ଼ି ମୁଦିଟିକୁ କାଢ଼ି ଆଣିବି ।

ରାଜା ଟିକିଏ ହସି ଦେଇ କହିଲେ—କୂପ ମଧ୍ୟରେ ପଶି ବାହାର କଲେ ହେବନାହିଁ ଗୋପାଳ ! ଯଦି ବୁଦ୍ଧି ଅଛି, ତେବେ

ଏହିଠାରେ ଠିଆହୋଇ ମୁଦିଟାକୁ ହାତ ପାଆନ୍ତାକୁ ଖୋଜିଆସ । ଡଙ୍ଗ ବା ଜଞ୍ଜିରରେ କୌଣସି ଜିନିଷ ବାନ୍ଧି ଲମ୍ବା କରି ଉଠାଇ ଆଣିବା କଥା ହେବନାହିଁ ।

ଏକଥା ଶୁଣି ଗୋପାଳ ଟିକିଏ ଚିନ୍ତାକରି ମନେ ମନେ କ'ଣ ଭାବି କହିଲେ—ମହାରାଜ ! ଯଦି ବିନା ସାହାଯ୍ୟରେ ମୁଦିଟିକୁ ମୋ ହାତ ପାଖକୁ ଫେର ଆସିବ, ତେବେ ମୋତେ ଆଠଦିନ ସମୟ ଦିଅନ୍ତୁ । ମୋ କହିବା ଅନୁସାରେ ଆଗ କୂପ ପାଣି ଶୁଖାଇ ଦିଅନ୍ତୁ; ତାହାପରା ପ୍ରତିମଣ ଜଣେ ପହରାଦାର ଜଗିରହୁ । ତେଣିକି ଯାହା ହେବ ମୁଁ କରିବ । ଗୋପାଳର କଥାଶୁଣି ରାଜା ଲୋକ ଲଗାଇ କୂପଟିକୁ ଶୁଖାଇ ଦେଲେ । ଗୋପାଳ କୂପ ଭିତରକୁ ଚାହିଁ ଦେଖିଲେ ଯେ, ମୁଦିଟି କୂପମଧ୍ୟରେ ପଡ଼ି ଜକଜକ ହୋଇ ଦିଶୁଛି । ତହୁଁ ସେ ଗୋଟିଏ ପାଛିଆରେ ଗୁଡ଼ିଏ ଗୋବର ନେଇ ଠିକ୍ ମୁଦି ଉପରେ ପକାଇ ଦେଲା । ତାପରେ ଲୋକମାନଙ୍କୁ କହିଲେ - ଆଜଠାରୁ ଏ କୂପରେ ଯେତେ ପାଣି ଝରିବ ତୁମେମାନେ ଯେପରି ସଙ୍ଗେ ସଙ୍ଗେ ତାହା ବାହାର କରିଦେବ । ଏଥିରେ ହେଳା କଲେ ରାଜାଙ୍କ ପାଖରେ କହି ଦଣ୍ଡ ସହ ଜୋରିମାନା କରାଇଦେବି ।

ଗୋପାଳ ଭଣ୍ଡର କଡ଼ା କଥା ଶୁଣି ଲୋକମାନେ କୂପରେ ପାଣି ହେବାକୁ ଦେଲେନାହିଁ । କୂପଟି ସବୁବେଳେ ଶୁଖିଲା ହେବାରୁ ସୂର୍ଯ୍ୟକିରଣ ପଡ଼ି କ୍ରମେ ମାଟିଗୁଡ଼ିକ ଶୁଖିଯାଇ ଫାଟିବାକୁ ଆରମ୍ଭ କଲା । ଲୋକେ କହନ୍ତି, ଗୋବର ଶୁଖିଲେ ମାଟିଠାରୁ ଉଠେ । ମାଟି ଉପରେ ଢଳା ହୋଇଥିବା ଗୋବର ଶୁଖିଗଲା ।

ଗୋପାଳ କହିଲେ; ଏଥର କୂପଟିକୁ ପାଣିରେ ପୂର୍ଣ୍ଣ କରି ଦିଅନ୍ତୁ । ରାଜା ଏଥିରେ ଥିବା ଗୂଢ଼ ରହସ୍ୟ କିଛି ବୁଝି ନପାରି ଗୋପାଳ କହିବା ଅନୁସାରେ ଲୋକ ଲଗାଇ କୂପଟିରେ ପାଣି ପୂର୍ଣ୍ଣକରିଦେଲେ କୂପଟିରେ ପାଣି ପଶିବା ମାତ୍ରେ ଶୁଖିଲା ଗୋବର ଗୁଣ୍ଡକ ମାଟି କାମୁଡ଼ି କ୍ରମେ କ୍ରମେ ଉପରକୁ ଉଠିଆସିଲା । କୂପଟି ଯେତେବେଳେ ପାଣିରେ ପୂର୍ଣ୍ଣ ହୋଇଗଲା, ସେତେବେଳେ ଗୋବର ଫଡ଼ାଟି ହାତରେ ଉଠାଇ ନେଇ ରାଜସଭାରେ ପହଞ୍ଚିଲେ ।

ଗୋପାଳ ହାତରେ ଘସି ଫଡ଼ାଟି ଦେଖି ରାଜା କହିଲେ— ଗୋପାଳ ! ମୋ ମୁଦିଟି କାହିଁ ଦିଅ ?

ଗୋପାଳ ସଙ୍ଗେ ସଙ୍ଗେ ଘସିଫଡ଼ାଟି ଭାଙ୍ଗି ମୁଦିଟି ରାଜାଙ୍କ ଆଗରେ ଥୋଇ କହିଲେ, ଏହି ନିଅନ୍ତୁ ଆପଣଙ୍କର ମୁଦି ପ୍ରଭୁ ! କିନ୍ତୁ ଏ ଗରିବଟିର ପୁରସ୍କାରଟି ଦେଇ ଦିଅନ୍ତୁ । ଅଦ୍ଭୁତ ବୁଦ୍ଧି ଯୋଗୁଁ ଗୋପାଳ ପୁରସ୍କୃତ ହେଲେ ।

—*—

## ଗୋପାଳର କପାଳରେ ପୋଡ଼ପିଠା

ରାଜା କୃଷ୍ଣଚନ୍ଦ୍ର ରହସ୍ୟ ଉପୁଜାଇବା ପାଇଁ ସଭାରେ କହିଲେ ଆମ ରାମଗୁରୁ ପ୍ରଭାତ କୁମାର ଭଟ୍ଟାଚାର୍ଯ୍ୟଙ୍କର ଯେଉଁ ବିଧବା ଭଉଣୀ ଅଛନ୍ତି, ତାଙ୍କୁ ଯିଏ ଠକାଇ ପାରିବ ସେ ମୋ ନିକଟରୁ ହଜାରେ ଟଙ୍କା ପୁରସ୍କାର ପାଇବ ।

ଏକଥା ଶୁଣି ସମସ୍ତେ ସମସ୍ତଙ୍କ ମୁହଁକୁ ଚାହିଁ ରହିଲେ; ଯେପରି କୃପଣ ଜଳଧରଙ୍କୁ ନାଗକୁ ଠକାଇବାକୁ କାହାର ସାହସ ହେଉନାହିଁ ସମସ୍ତଙ୍କର ନୀରବତା ଦେଖି ଗୋପାଳ କହିଲା, ଆଜ୍ଞା ! ହଜୁରେ ଦୁଇଦିନ ମଧ୍ୟରେ ମୁଁ ଠକାଇ ଦେବି । ତା'ର କଥା ଶୁଣି ରାଜା ହସି ହସି କହିଲେ, ତୁମେ ତାଙ୍କୁ ଠକାଇବ ନା ନିଜେ ନିଜେ ଠକିବ ? ଆଚ୍ଛା ତୁମକୁ ଆଠଦିନ ସମୟ ଦେଲି । ତୁମେ ଯଦି ଏ ଭିତରେ ଠକାଇପାରି, ତେବେ ଶହେଟଙ୍କା ନେବ । ଗୋପାଳ ଆଜ୍ଞା ବୋଲି କହି ଚାଲିଗଲା ।

ରାଜଗୁରୁଙ୍କର ଭଉଣୀ ଅଳ୍ପ ବୟସରୁ ବିଧବା ହୋଇ ରାଜାଙ୍କ ସାଙ୍ଗରେ ଥାଆନ୍ତି । ତାଙ୍କର ବୟସ ପ୍ରାୟ ଚାଳିଶହେବ । ସାରାଦିନଟି ତାଙ୍କର ମାଳା ଜପିବାରେ କଟିଯାଏ । ନିଜର ରାନ୍ଧଣା ଭିନ୍ନ ଅନ୍ୟ କାହାର ହାତରୁ ପାଣି ଛୁଅନ୍ତି ନାହିଁ । ଅନ୍ୟଲୋକର ଛାଇ ମାଡ଼ିଲେ କିମ୍ବା ବାଟ ଘାଟରେ ଖପରା ମାଡ଼ିଲେ ସ୍ନାନେ ସାଙ୍ଗେ ଗାଧୋଇ ପଡ଼ନ୍ତି । ଜଳ କଲେ ସାତ ଦିନ ସାତ ରାତି ନିଅଣ୍ଟ ହୁଏ । ଗାଈ ତାଙ୍କର କୁଣ୍ଡରେ ବସା ବାନ୍ଧି ରହିଛି । ସେ ଜୀବନରେ ଭିଖାରୀକୁ ମୁଠିଏ କେଉଁଦିନ ଭିକ ଦେଇ ନାହାନ୍ତି । ସାହିପଡ଼ିଶାଙ୍କ ସହିତ ତାଙ୍କର ଆଦୌ ପଡ଼େନାହିଁ । ନାନୀଙ୍କର ଆଉରି ଗୋଟିଏ ଅଭ୍ୟାସ ଅଛି ସେ ସକାଳୁ ଉଠି ଗାଧୋଇ ପଡ଼େ, ଚାଉଳ ଗୁଣ୍ଡଏ ବାଟି, ତା' ଭିତରେ ଗୁଡ଼ ଦେଇ ଗୋଟିଏ ପୋଡ଼ପିଠା ତିଆରି କରନ୍ତି । ତା'ପରେ ସେବାଧର୍ମ କରି ସେତକ ଖାଇ ଉପାରନ୍ଧରେ ଲାଗନ୍ତି । ଏ ହେଲା ତାଙ୍କର ନିତିଦିନିଆ କାମ । ନାନୀଙ୍କର ପ୍ରତିଦିନ ସେରେ ଓଜନର ପୋଡ଼ପିଠାଟିଏ ମଣୋହିରେ ଲାଗେ ବୋଲି ସେ କଥା ଗ୍ରାମରେ ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ କାହାକୁ ଅଜଣା ନାହିଁ ।

ହେଲେ ମଧ୍ୟ ସେ ପିଠା ପୋଡୁଥିବା ସମୟରେ ସେଠାକୁ କେହି ଯାଆନ୍ତି ନାହିଁ ।

ଗୋପାଳ ଭଣ୍ଡ ତ ଏ ସମସ୍ତ କଥା ଜାଣେ । ସେ ଦିନ ସେ ରାଜସଭା ମଧ୍ୟରୁ ରାଜଗୁରୁଙ୍କ ଘରବାଟେ ଆସି ନାନୀଙ୍କ ସହିତ ଏଣୁତେଣୁ ଦୁ'ପଦ ପ୍ରଶଂସା କଥା କହି ଚାଲିଆସିଲା । ତା' ପରଦିନ ସକାଳୁ ଗୋଟିଏ ପିକା ମୋଡ଼ି ହାତରେ ଡ଼ ଳଧରି ରାଜଗୁରୁଙ୍କ ଘରବାଟେ ଯାଉଥା ଗଲା । ଯିବାବେଳେ ସେ ଦେଖିଲା ନାନୀ ହାଣ୍ଡି ଦାହାରେ ନୂଆଁ ପଲମରଖି ପିଠୋଉ ଆଣି କଦଳୀ ପତ୍ରରେ ରଖିଛି ସେ ସଙ୍ଗେ ସଙ୍ଗେ ଯାଉଥାଫେରି ଆସି ଗୋଟିଏ ଜାଗାରେ ଠିଆହେଲା ଯେତେବେଳେ ନାନୀ ପିଠା ପକାଇ ଦେଇ ଘର ଭିତରକୁ କୌଣସି କାମ ପାଇଁ ଗଲେ, ସେତେବେଳେ ଗୋପାଳ ଚାଲିଆସି ନୂଆଁ ପଲମ ପାଖରେ ବସିପଡ଼ି ଗୋଟିଏ କଙ୍କଡ଼ା ପକାଇ ଦେଇ ଖଣ୍ଡିଆ ପିକା ଲଗାଇବାକୁ ଲାଗିଲା । ନାନୀ ଜାଣିବା ପାଇଁ ଖଣ୍ଡି କାଶ ମାରିଲା ।

ନାନୀ କାଶ ଶୁଣି ବଡ଼ବେଗରେ ଧାଇଁଆସି ଗୋପାଳକୁ ପିକା ଲଗାଉ ଥିବାର ଦେଖି କହିଲା—କ'ରେ ଗୋପାଳ ଯୋଗନଷ୍ଟିଆ ଭଣ୍ଡାର ଏଠ କ'ଣ କରୁଛୁ ? ତୁ କ'ଣ ଜାଣୁନା ମୁଁ ଗୋଟିଏ ପିଠା ପୋଡୁଛୁ ବୋଲି ? ତା'ର ଗାଳିଶୁଣି ଗୋପାଳ ଟିକିଏ ରାଗିଯାଇ କହିଲା—ଦେଖ ନାନୀ ! ତମ ପିଠା ଗୁଏଁ ଏଇଠି ପଡ଼ିଛି । କେବଳ ମୁଁ ଖଣ୍ଡିଏ ପିକା ଅଲଗା ଲଗାଇଲି ବୋଲି ତୁମେ ନ ବୁଝି ନ ଦେଖି ମୋ ଜାତି ଓ୍କର ଉଠାଇ ଗାଳି ଦେଉଛ ନାନୀ ! ମନେରଖିଥା ମୋର ନାମ ଗୋପାଳ ଭଣ୍ଡ । ରାଜାଙ୍କ

କୃପଣ ପିଉସୀ ଅପେକ୍ଷା ତୁମେ ବଡ଼ ନୁହେଁ । ସେ ମୋତେ ଆଦର କରିନେଇ ଖାଇବାକୁ ଦେଇଛନ୍ତି । ତୁମେ ଆଜ ଛନା ଦୋଷରେ ମୋତେ ଗାଳି ଦେଉଛ । ହଉ, ମୁଁ ଯାଉଛି ରାଜାଙ୍କୁ ଏକଥା କହିବି, ତା' ପରେ ଦୁଇଜଣ ମଧ୍ୟରେ ଯାହା ହେବ ବୁଝିପାରିବ ।

ଗୋପାଳର କଥା ଶୁଣି ନାଣୀ ଟିକଏ ଡରିଗଲେ । ହେଲେ ମଧ୍ୟ ତାଙ୍କର ମୁହଁ ତୋଡ଼ ଛାଡ଼ିଲେ ନାହିଁ ସେ ଗୋପାଳକୁ କହିଲେ, ତୁ ରାଜାଙ୍କ ପାଖରେ ଯାଇ କ'ଣ କହିବୁ ? ତୁ ତାଙ୍କର ଭଣ୍ଡ ହେଲେ ମୁଁ ତାଙ୍କ ଗୁରୁଙ୍କର ଭଉଣୀ । ବିଧବା ବ୍ରାହ୍ମଣୀ ମୁଁ, ତୁ ଜାଣିଶୁଣି ପିଠା ଛୁଇଁଦେଲୁ ମୁଁ କହିବି ନାହିଁ କ'ଣ ପୂଜବ ?

ଗୋପାଳ ହସି ହସି କହିଲା— ନାଣୀ ! ତୁମେ ବିଧବା ବ୍ରାହ୍ମଣୀ ସତ ; କିନ୍ତୁ କା'ଲି କ'ଣ କଳସୀରେ ପୂରାଇ ଆଣିଥିଲ କହିଲ ? ଯାହା ଆଣିଥିଲ ତା' ତ ଏ ପିଠା ପାଖରେ ପ୍ରମାଣ ମିଳୁଛି । ଏଇଟା କ'ଣ ଦେଖିଲ ? ହଁ, କଥାରେ ଯାହା କହନ୍ତି ବଗଡ଼-ବୈଷ୍ଣବୀ ନୁହେଁ ।

ଗୋପାଳ ଏହା କହୁଁ କହୁଁ ନାଣୀକୁ ଦରପୋଡ଼ା କଙ୍କଡ଼ାଟି ଦେଖାଇ ଦେଲା । ନାଣୀ ଆଶ୍ଚର୍ଯ୍ୟ ହୋଇ ଗୋପାଳକୁ କହିଲେ— ଏ କଙ୍କଡ଼ାଟା ଏଠକୁ ଆସିଲା କେଉଁଠୁ ? ଆଉ କ'ଣ ପକ୍ଷିଗଦା ଭିତରେ ଥିଲା, ମୁଁ ଜାଣେନା ନିଆଁ ଲଗାଇ ଦେଲ । ଗୋପାଳ କହିଲା, ଏ ପିଠାଟି ଥାଉ, ମୁଁ ଏ କଙ୍କଡ଼ାଟି ନେଇ ରାଜାଙ୍କ ପାଖକୁ ଯାଉଛି ସେ ଯାହା ବିଚାର କରିବେ । ଗୋପାଳ ଏହା କହି ଉଠିଲା ନାଣୀ ଉପରେ ତାକୁ ଧରି କହିଲେ, ମୋ ବାପ, ଏ କଥା ରାଜାଙ୍କୁ

କହିବୁ ନାହିଁ, ଏ ପିଠାଟି ଖା, ପାଞ୍ଚଟି ଟଙ୍କା ଦେଉଛୁ, ତାକୁ ନେଇ ଘରକୁ ଯା ।

ଗୋପାଳ କହିଲେ—ନା ନାମା ଡମକଥା କ'ଣ ଜାଣିନାହିଁ । ମୁଁ ରାଜାଙ୍କୁ କହିବି ? ବରଷା ପାଣି ହେବ, କୁଆଡୁ ଗୋଟିଏ କାଙ୍କଡ଼ା ଆସି ପଶି ଯାଇଥିଲା । ତୁମେ ତ ବୁଢ଼ୀ ଲୋକ, ନ ଜାଣି ନିଆଁ ଲଗାଇ ଦେଇଛ—ଏଥିରେ ଦୋଷ ଗୋଟାଏ କ'ଣ ; କିନ୍ତୁ ଏଡ଼େ ଧର୍ମରକ୍ଷା ହେଲା, ମୁଁ ନ ଦେଖିଥିଲେ ତୁମେ ଖାଇ ଦେଇଥାନ୍ତ । ସେ କଥା ଯାହାହେଉ, ଆଉ ପାଞ୍ଚଟଙ୍କା ନ ଦେଲେ ହେବ ନାହିଁ । ତୁମେ କେଡ଼େ ବୁଢ଼ ତ, ତୁମକୁ କେତେ ଅଧର୍ମରୁ ବଞ୍ଚାଇଲି ?

ନାମା ଆଉ କ'ଣ କରିବ ? ମୁଣ୍ଡ କାନ ଆଉଁଷି ଗୋପାଳ ହାତରେ ଦଶଟି ଟଙ୍କା ଦେଲେ । ଗୋପାଳ ପୋଡ଼ପିଠା ସହ ଦଶଟି ଟଙ୍କା ନେଇ ରାଜସଭାରେ ପହଞ୍ଚିଲେ ଏବଂ ସମସ୍ତ କହିଲେ । ସଭା ଲୋକଙ୍କ ମୁହଁରୁ ଧନ୍ୟ ଧନ୍ୟ ପଦ ଶୁଣି ଘରକୁ ଫେରିଲେ ।



## ଗୋପାଳ ଭଣ୍ଡଙ୍କ ଗୋଇନ୍ଦାଗିରି

ଏକ ଦିନକରେ ରାଜା କୃଷ୍ଣଚନ୍ଦ୍ରଙ୍କର ରାଣୀଙ୍କ ଗଳାରୁ ବହୁମୂଲ୍ୟ ହୀରାଯୁକ୍ତ ହାରଟିଏ ହଜିଗଲା । ତହିଁରେ ରାଜା ଅତ୍ୟନ୍ତ ଦୁଃଖିତ ହୋଇ ରାଜ୍ୟରେ ପ୍ରଚାର କଲେ ଯେ; ଯିଏ ହୀରାହାର ଆଣିକରି ଦେବ, ସେ ମୋ ଠାରୁ ନଗଦ ଏକ ହଜାର ଟଙ୍କା ପୁରସ୍କାର ପାଇବ । ପ୍ରଚାର କଲେ ସତ ; କିନ୍ତୁ ଆଶା ବିଫଳ ହେଲା

ଏହିପରି ଦିନକୁ ଦିନ, ମାସକୁ ମାସ ବିତିଗଲା । ଦିନେ ରାଜା ଅତ୍ୟନ୍ତ ଦୁଃଖିତ ହୋଇ ଗୋପାଳ ଭଣ୍ଡିକୁ କହିଲେ– ଗୋପାଳ ! ବହୁଦିନ ହେଲା ରାଣୀଙ୍କର ହାର ହାରିଛି ହଜିଗଲା । ସେଥିପାଇଁ ମୁଁ ବହୁତ ଅନୁସନ୍ଧାନ କରି ସବୁଥିରୁ ବିଫଳ ହୋଇ ଶେଷରେ ହଜାରେ ଟଙ୍କା ପୁରସ୍କାର ଦେବାକୁ ପ୍ରଚାର କଲି; କିନ୍ତୁ ତହିଁରେ କିଛି ଫଳ ହେଲାନି । ତେବେ କ'ଣ ହାରଟି ଆଉ ମିଳିବ ନାହିଁ ?

ଏକଥା ଶୁଣି ଗୋପାଳ ଭଣ୍ଡ ଟିକଏ ରହିଯାଇ ମନେ ମନେ କ'ଣ ଭାବି କହିଲା ଉପାୟ କଲେ ମିଳିବ ଆଜ୍ଞା ! ରାଜା ଆତୁର ହୋଇ ପଚାରିଲେ—କି ଉପାୟ କରିବ କହିଲ ଭଣ୍ଡେ ? ଭଣ୍ଡ ନମ୍ର ସ୍ୱରରେ କହିଲା— ମହାରାଜ ! ଆପଣ ରାଜ୍ୟରେ ପ୍ରଚାର କରି ଦିଅନ୍ତୁ ଯେ, କାଲି ଦେବୀଙ୍କର ସ୍ୱପ୍ନ ହୋଇଛି, ଯେଉଁ ଲୋକଟି ହାରହାର ଚିତ୍ର ଅଙ୍କନ କରିଦେବ, ସେ ମୋ ଠାରୁ ହଜାର ଟଙ୍କା ପୁରସ୍କାର ନେବ । ମୋ ହୁକୁମକୁ ଅମାନ୍ୟ କରି କୌଣସି ପ୍ରଜା ହାରହାର ଚିତ୍ର ଅଙ୍କନ ନକଲେ ସେ ନିଶ୍ଚୟ ଦଣ୍ଡନୀୟ ହେବ । ଏହା ପ୍ରଚାର କରିବା ଦ୍ୱାରା ପ୍ରଜାମାନେ ଟଙ୍କା ଲୋଭରେ ହେଉ ବା ଦଣ୍ଡ ଭୟରେ ହେଉ, ପ୍ରତ୍ୟେକେ ଚିତ୍ର ଅଙ୍କନ କରି ଆପଣଙ୍କୁ ଆଣି ଦେବେ ।

ଗୋପାଳ କଥା ଶୁଣି ରାଜା କହିଲେ—ଏଥିରେ ବିଶେଷ ଫଳ ହେବ କ'ଣ ? ଭଣ୍ଡ ଉତ୍ତର ଦେଲା ନିଶ୍ଚୟ ଫଳ ହେବ ମହାରାଜ; କାରଣ ପ୍ରଜାମାନେ ତ ଜୀବନରେ ହାରାହାର ଦେଖିନାହାନ୍ତି; ତେଣୁ ମନକୁ ମନ ଅନୁମାନ କରି ଆମ୍ବ, ପଣସ, କଦଳି ଭେଣ୍ଡି, ଯାହାକୁ ଯାହା ଆସିବ, ତାହା ଆଙ୍କି ଆଣି ଦେଖାଇବେ । ଯିଏ ପ୍ରକୃତରେ ହାରାହାର ପାଇଥିବ ସେ ନିଶ୍ଚୟ ଅବିକଳ ହାରାହାରଟି ଆଣି ଗୁମ୍ଫକୁ

ଦେଖାଇବ, ତହିଁରୁ ଜଣାପଡ଼ିବ ଯେ, ସେହି ଲୋକଟି ହୀରହାର ପାଇ ରଖିଛି । ଆପଣ ତାକୁ ଧମକ ଦେଇ ପଚାରିଲେ ସେ ନିଶ୍ଚୟ ଆଣିବ ।

ଗୋପାଳର ଯୁକ୍ତିଯୁକ୍ତ କଥାଟି ରାଜାଙ୍କର ମନକୁ ବେଶ୍ ପାଇଲା, ସେ ଆଉ କାଳ ବିଳମ୍ବ ନକରି ସଙ୍ଗେ ସଙ୍ଗେ ରାଜ୍ୟରେ ହସ୍ତ କରିଥିବା କଥାକୁ ଘୋଷଣା କରିଦେଲେ । ପ୍ରଜାମାନେ ଡର ବା ଟଙ୍କା ଲୋଭରେ ଯାହାକୁ ଯାହା ଆସିଲା ତାହା ଅଙ୍କନ କରି ନେଇ ରାଜାଙ୍କୁ ଦେଖାଇଲେ । ଶେଷରେ ଜଣେ ସବଳକାୟ ଲୋକ ଯେଉଁ ଛବିଟି ଆଙ୍କି ଆଣିଲା, ସେ ଛବିଟି ଠିକ୍ ହୀରହାର ସହିତ ମିଳିଗଲା । ରାଜା ଛବିଟି ଦେଖି ଚମକି ଉଠି ଲୋକଟିକୁ ଧମକ ଦେଇ ପଚାରିବାରୁ ଲୋକଟି ଭୟରେ ହାତଯୋଡ଼ି କହିଲା — ମହାରାଜ ! ହାରଟା ପୋଖରୀ ଘାଟରେ ପଡ଼ିଥିଲା । ତାକୁ ମୋର ସ୍ତ୍ରୀ ଘରକୁ ନେବାରୁ ଆପଣଙ୍କୁ ମୁଁ ଭୟରେ ନ ଦେଇ ଲୁଚାଇ ରଖିଛି । ଏହି ସେହି ହାରଟି ନିଅନ୍ତୁ । ହାରଟି ପାଇ ରାଜାଙ୍କ ମନ ବିଶେଷ ଆନନ୍ଦ ହେଲା । ସେ ହାର ପାଇଥିବା ଲୋକଟିକୁ କିଛି ପୁରସ୍କାର ଦେଲେ ତା ସଙ୍ଗେ ସଙ୍ଗେ ଗୋପାଳର ଗୋଏନ୍ଦାଗିରି ପାଇଁ ଏକ ହଜାର ଟଙ୍କା ପ୍ରଦାନ କଲେ ।



## ଗୋପାଳର ମୃଗୀ ରୋଗ

ଯେଉଁ ଲୋକମାନେ ଅନ୍ୟମାନଙ୍କ ଜିନିଷ ପତ୍ର ଓ ଟଙ୍କା ପଇସା ଆଣି ଫାର୍କି ଦିଏ, ତାକୁ କହନ୍ତି ଫାର୍କିବାଜ । ଏହି ଅପକର୍ମ

ହାର୍ ସେ ଲୋକ କାହାରିଠାରୁ ଜନଷ ପତ୍ର କମ୍ବା ଟଙ୍କା ପଇସା ପାଇପାରେ ନାହିଁ । ଏହି ଫାଙ୍କିବାଜମାନଙ୍କ ମଧ୍ୟରେ ଗୋପାଳ ଭଣ୍ଡ ଅନ୍ୟତମ । ସେ ଯାହା ପାଖରୁ କିଛି ଟଙ୍କା ଧାର୍ ସ୍ୱରୂପ ହସ୍ତଗତ କରିଥାଏ, ତାକୁ ଦେବାକୁ ସେ କେବେହେଲେ ମନ କଳାଏନା । ଲୋକ ମାଗିଲେ ସେ ଅପଥା ନାଲି ଆଖି ଦେଖାଇ ରାଜାଙ୍କ ନିକଟରେ ମିଥ୍ୟା ଗୁହାରି କରି ତାକୁ ହଇରାଣ କରେ ; ତେଣୁ ସେ ସମସ୍ତଙ୍କର ଅବିଶ୍ୱାସର ପାତ୍ର ହୁଏ ଏବଂ କାହାରିଠାରୁ କୌଣସି ଜନଷ ପାଇପାରେ ନାହିଁ । ଲୋକମାନେ କହନ୍ତି—ସ୍ୱାମୀର ସ୍ତ୍ରୀ ସହଧର୍ମିଣୀ, ସ୍ୱାମୀ ଅନୁଗତା ସ୍ତ୍ରୀ । ଗୋପାଳ ଭଣ୍ଡଙ୍କର ପତ୍ନୀ ସମସ୍ତଙ୍କଠାରୁ ଭିନ୍ନ । ସେ ସ୍ୱାମୀର ସହଧର୍ମିଣୀ ହେବା ପରିବର୍ତ୍ତେ ସହକର୍ମିଣୀ ହିସାବରେ କାମକରେ । ଗୋପାଳ ଭଣ୍ଡ ହେଲେ, ସେ ମଧ୍ୟ ଭଣ୍ଡୀ । ଏହିକଥା ନିକଟସ୍ଥ ଦଶ ଖଣ୍ଡ ଗ୍ରାମରେ ବାଇଦ ବାଜୁଛି ।

ବଙ୍ଗ ବିହାର ଓଡ଼ିଶାର ପ୍ରତି ଗ୍ରାମରେ ମଧ୍ୟ ହାଟ ବଜାର ନଥାଏ ; ତେଣୁ ଲୋକମାନଙ୍କର ଅସୁବିଧା ଦୂର କରିବାପାଇଁ ଲୋକମାନେ କମ୍ବା ଵ୍ୟବସାୟୀମାନେ ଵୃହିବା ଅନୁଯାୟୀ ପରିବାପତ୍ର ଏବଂ ତେଲ ମସଲା ନେଇ ଗ୍ରାମେ ଗ୍ରାମେ ବିକ୍ରି କରନ୍ତି ; ତେଣୁ ସେ ପ୍ରତ୍ୟେକ ଗ୍ରାମର ଲୋକମାନେ ଧାନ, ଚାଉଳ ଏବଂ ପଇସା ଆକାରରେ ଦେଇ ସେମାନଙ୍କ ଠାରୁ ସୌଦାପତ୍ର ପାଇ ପାରନ୍ତି ।

ଦିନକର ଘଟଣା ଜଣେ ପରିବା ବ୍ୟବସାୟୀ ବୋଝେ ପନି-ପରିବା ମୁଣ୍ଡାଇ ଭଣ୍ଡ ଗ୍ରାମରେ ଆସି ପହଞ୍ଚିଲା । ଲୋକଟି ତାର ମୁଣ୍ଡରୁ ପରିବା ବୋଝଟି ତଳକୁ ଓହ୍ଲାଇବା ମାତ୍ରେ ଗ୍ରାମର

ସ୍ତ୍ରୀ ଲୋକମାନେ ଆସି ବେପାରୀଟିକୁ ମାଡ଼ମାଡ଼ି - ପରି ଘେରିଗଲେ ଏବଂ ପରେ ନିଜ ନିଜର ମନମୁତାବକ ଜିନିଷପତ୍ର ପଇସା ଦେଇ ନିଜ ଘରକୁ ପ୍ରତ୍ୟାବର୍ତ୍ତନ କଲେ । ଶେଷରେ ଗୋପାଳ ଭାଣ୍ଡର ସ୍ତ୍ରୀ ଆସି ୨ ସେର ବାଇଗଣ ଓଜନ କରି ତା'ର ଜାଗାରେ ରଖି, ତାର ମୁନିବ ଘରେ ନାହାନ୍ତି ଏବଂ ଅନ୍ୟ ଆଡ଼େ ବନ୍ଦୋବସ୍ତ କରି ଆସି ଘରୁ ପଇସା ନେଇଯିବ ବୋଲି କହିଲା ।

ଏ କଥା ଶୁଣି ବେପାରୀ ଜଣକ କହିଲା—ମୋ ପାଖରେ ଧାର୍ ଚଳେନା । ତୁମର ଭଣ୍ଡ ମୋର ସୁପରିଚିତ । ଯାହା ନେବ ଦେବାକୁ ଘରି କୁଣ୍ଠାବୋଧ । ମାଗିଲେ ଓଲଟି ନାଲି ଆଖି ; ତେଣୁ କେଳହୁ ସାବଧାନ ହେବା ଉଚିତ । ତୁମେ ପଇସା ଦେଇ ସାଙ୍ଗେ ସାଙ୍ଗେ ବାଇଗଣ ନେଲେ ମୋର କିଛି ଆପତ୍ତି ନଥିବ, ନହେଲେ ଅନ୍ୟତ୍ର ଦେଖ ।

ଏ କଥା ଶୁଣି ଗୋପାଳ ସ୍ତ୍ରୀ କହିଲା—ତୁ ଯେତିକ କହିଲୁଣି ସେତିକ ବହୁତ ହୋଇଗଲାଣି । ମୁଁ ଏଥର ବାଇଗଣ ନେଇ ଘରୁ ପଇସା ନେଇ ଆସୁଛି । ବେପାରୀ ଜଣକ ତା'ର କଥାକୁ ନ ଶୁଣି କହିଲା—ନାହିଁ ତା' ହୋଇପାରିବ ନାହିଁ । ତୁ ଆଗେ ପଇସା ଆଣିଲେ ମୁଁ ପରେ ବାଇଗଣ ଦେବି ।

ବେପାରୀ ଏ କଥା କହୁ କହୁ ତାହାଠାରୁ ବାଇଗଣତକ ଛଡ଼ାଇ ନେଲା । ଏ କଥା ଦେଖି ଗାଁ ମାଇପେ ଆନନ୍ଦରେ ହସିଲେ ଗୋପାଳ ସ୍ତ୍ରୀ ଲଜ୍ଜା ଅପମାନରେ ସଢ଼ିଗଲା । କାହାରିକୁ କିଛି କହି ନ ପାରି ଘରକୁ ପଳାଇ ଗଲା । ହେଲେ ଘରେ ଆଉ କିଛି

ନ କରି ଅପମାନର ପ୍ରତିଶୋଧ ବାଟ ଖୋଜି ବୁଲୁଥାଏ ଏବଂ ରାତିକି ପରି ଗୋପାଳର ଫେରିବା ପଥକୁ ଚାହିଁ ବସିଥାଏ ।

କିଛିକ୍ଷଣ ଉତ୍ତାରେ ଗୋପାଳ ଆସି ଦେଖୁଛନ୍ତି, ତାର ଆଦରର ରୂପସୀ କାଳଭୈରବୀ ରୂପ ଧାରଣ କରି ସତେ ଯେପରି କାହାରିକୁ ଦଂଶନ କରିବା ପାଇଁ ଲାଲ ଟହ ଟହ ଦେଖାଯାଉଛି । ସତେ ଯେପରି ସେ ଦୁନିଆରେ କାହାରିକୁ ବାଦ୍ ଦେବ ନାହିଁ । ସ୍ତ୍ରୀର ଏପରି ରୂପ ଦେଖି ଗୋପାଳ କିଂ କର୍ତ୍ତବ୍ୟମୂଢ଼ ହୋଇ ପଡ଼ିଲେ । ରାଗଟାକୁ କମାଇ କଥାଟା ଜାଣିବା ପାଇଁ ଧୀର ମନ୍ଥର ଭାବରେ ତାଙ୍କ ନିକଟକୁ ଆଗେଇ ଯାଇ ହସ ହସ ବଦନରେ କହିଲେ – ହେ ମୋ ମୂଳକ ହାସିନୀ, କୁରଙ୍ଗ ଗାମିନୀ, ମାନମୟୀ ରୂପମୟୀ, ପ୍ରେୟସୀ ମୋର ! ଆଜ ଏ ଅଭିମାନ କାହା ଉପରେ ? ଗୋପାଳର ଏପରି ରସିକତା ବାକ୍ୟ ପଦଟା ଶୁଣିବା ମାତ୍ରେ ନିଆଁରେ ଘିଅ ପଡ଼ିବା ପରି ଜଳିଉଠି ସମସ୍ତ କଥା ବଖାଣି ଗଲା । ଗୋପାଳ ସବୁ କଥାଗୁଡ଼ିକ ଶୁଣି ସ୍ତ୍ରୀର ମୁଣ୍ଡ ଝିଙ୍କିଦେଇ କହିଲେ—ଏଥି ସାମାନ୍ୟ କଥା ପାଇଁ ଏତେ ରାଗ କରୁଛ ? ସେ ଲୋକଟା ପୁଣି ଥରେ ଆସୁ ତାକୁ ପହଁରରେ ପିଟି ପିଟି ଗୁଡ଼ଦେଲେ ତ ହେଲା । ସ୍ତ୍ରୀ ତାର କହିଲା— ମୁଁ ଯେଉଁ ଅପମାନ ପାଇଛି, ତାର ପ୍ରତିଶୋଧ ନ ନେବା ଯାଏ ମୁଁ କେବେ ହେଲେ ଶୁଆଇବି ନାହିଁ । ଗୋପାଳ ସମର୍ଥନ କରି ଚାଲିଗଲେ । ସ୍ତ୍ରୀ ତାର ଶାନ୍ତ ହୋଇ ପାକ ପ୍ରସ୍ତୁତ କରିବା ପାଇଁ ବାହାରିଲା ।

ଯେଉଁଦିନ ପଣ୍ଡିତ ଦେବାଶ୍ରୀ ଆସିବାର କଥା ସେଦିନ ଗୋପାଳ ଆଉ କେଉଁ ଆଡ଼କୁ ଗଲେ ନାହିଁ । ସେ କାନରେ କ'ଣ

ଫୁସୁଲାଇ ଦେଇ ପିକାଟିଏ ଲଗାଇ ଦାଣ୍ଡ ବାରଣ୍ଡାରେ ବସି ରହିଲା । ସ୍ତ୍ରୀ ଚାର ମୁଠାଏ ପହିଁର ଧରି କବାଟ ଆଢୁଆଳରେ ଛପି ରହିଥାଏ । କିଛି ସମୟ ପରେ ବେପାରୀଟି ବୋଝ ମୁଣ୍ଡାଇ ଆସି ଗୋପାଳ ବ୍ୟତୀତ ଆଉ କାହାକୁ ଦାଣ୍ଡରେ ପାଇଲା ନାହିଁ ବୋଝଟି ଓହ୍ଲାଇ ଦେବାକୁ ; ତେଣୁ ଗୋପାଳକୁ କହିଲା-- ଭାଇ ଟିକଏ ବୋଝଟି ଓହ୍ଲାଇ ଦେଇ ଯିବ କି ?

ବେପାରୀର କଥା ଶୁଣି ଗୋପାଳ କହିଲା—ହଁ, ବୋଝଟି ଓହ୍ଲାଇ ଦେଇ ପାରିବି ; କିନ୍ତୁ ମୋର ଅପସ୍ମାର ଭଳି ଗୋଟିଏ ମୃଗୀରୋଗ ଅଛି । ସେ କେତେବେଳେ ବାହାରି ପଡ଼େ; ତାହା ଜାଣି ପାରେନା ; ତେଣୁ ମୋତେ ବହୁତ ସାବଧାନରେ ଚାଲିବାକୁ ପଡ଼େ । ଆଜି ସକାଳୁ ଥରେ ବାହାରି ପଡ଼ିଥିଲା ବୋଲି ପିଣ୍ଡାଟିରେ ବସିରହିଛି । ତୁମ ବୋଝଟି ଓହ୍ଲାଉ ଓହ୍ଲାଉ ଯଦି ପୁଣି ବାହାରି ପଡ଼େ, ତେବେ ମୁଁ କଷ୍ଟ ପାଇବି ଓ ତୁମର ଜିନିଷ ନଷ୍ଟ ହେବ ।

ଏ କଥା ଶୁଣି ବେପାରୀଟି ନିରୁପାୟ ହୋଇ କହିଲା—ନା ଭାଇ କିଛି ହେବନାହିଁ ଖାଲି ଟିକଏ ଓହ୍ଲାଇ ଦେଇ ଚାଲିଯିବ । ଗୋପାଳ ଭଣ୍ଡ ଆଉ କିଛି ନ କହି ବେପାରୀ ମୁଣ୍ଡରୁ ବୋଝଟି ଓହ୍ଲାଇ ଦେଲା ; କିନ୍ତୁ ବୋଝଟି ଅର୍ଦ୍ଧେକ ଓହ୍ଲାଇଛି କି ନାହିଁ, ହଠାତ୍ ଆଁ ଆଁ କରି ବୋଝଟିକୁ ଛାଡ଼ିଦେଇ ତଳେ ପଡ଼ିଗଲା ଏବଂ ମୁହଁଟାକୁ ମାଟିରେ ଘଷିବା ପରି ଅଭିନୟ କରି ଗ ଗଁ ହେବାକୁ ଲାଗିଲା । ଗୋପାଳର ଅବସ୍ଥା ଦେଖି ବେପାରୀଟି କାବା ହୋଇ-ଗଲା । ପନପରିବାଗୁଡ଼ିକ ସେହିଭଳି ପଡ଼ିଥାଏ ।

ଗୋପାଳର ଅଭିନୟ ପରେ ଗୋପାଳର ସ୍ତ୍ରୀର ପାଳି ପଡ଼ିଲା । ସେ ତ ଯୁଦ୍ଧ କରିବା ପାଇଁ ଆଗରୁ ଖଣ୍ଡା ପକାଇ ରଖିଥିଲା, ସ୍ୱାମୀ ଗଁ ଗଁ ହୋଇ ଅଭିନୟ କରିବା ମାତ୍ରେ ହଠାତ୍ ସେ ଘରୁ ଉଗ୍ରଚଣ୍ଡୀ ରୂପ ଧାରଣ କରି ଦୌଡ଼ିଆସି ପାଟିକରି କହିଲା— ମା' ଲୋ ! ଏ ସବାଖିଆ ମୋ ସ୍ୱାମୀକୁ ମାରି ପକାଇଲା ଲୋ ! ସେ ଏକଥା କହୁ କହୁ ଧରିଥିବା ପହଁରରେ ବେପାରୀଟିକୁ ପିଟିବାରେ ଲାଗିଲା । ବେପାରୀଟା ଯେତେ କହିଲେ ମଧ୍ୟ ଝାଡ଼ୁ ବର୍ଷଣ ମୂଷଳ ଧାରରେ ଚାଲିଥାଏ । ବେପାରୀ ବଚରାର ଭୁଲ କ'ଣ ?

ଗୋଟିଏ ପଟରେ ପ୍ରହରବାର ଇଚ୍ଛାପ୍ରିତ, ଅନ୍ୟ ପଟରେ ଗୋପାଳର ଗଁ ଗଁ ଗର୍ଜନ, ଆଉ ଅନ୍ୟ ପଟରେ କଳା ପିଠି ଉପରେ ପହଁରଟି ଛୁଟିବାରେ ଲାଗିଛି । ଏପରି ଜୀବନମରଣ ସମସ୍ୟାବେଳେ ପଣପରିବା ଛାଡ଼ିଦେଇ କୌଣସିମତେ ପ୍ରାଣ ନେଇ ପଳାଇ ଗଲେ ବଞ୍ଚେ ।

ବେପାରୀଟି ଆଉ ଛିଡ଼ା ହୋଇପାରିଲା ନାହିଁ । ଗୋପାଳ ସ୍ତ୍ରୀକୁ ହାତ ଯୋଡ଼ି କହିଲା—ମା' ଉଗ୍ରଚଣ୍ଡୀ ! ଏହି ପରିବା ନେଇ ମୋତେ ଛାଡ଼ି ଦେ ମୁଁ ଯାଏ । ଯାହା କହିଲେ, ତୁମ ସ୍ୱାମୀର ମୃଗୀ ବେମାର ସଙ୍ଗେ ମୋତେ ଚେଁ ଛୁଟଗଲ ବେମାର ଧରିବ । ଏତିକ କହି ବେପାରୀଟି ଦୌଡ଼ି ପଳାଇଲା । ଗୋପାଳର ସ୍ତ୍ରୀ ତା ପଛରେ କିଛି ବାଟ ଗୋଡ଼ାଇ ଯାଇ ଫେରିଆସି କହିଲା—ଏଥର ଉଠ ସବୁ ପଣପରିବା ତୋଳ, ସେ ଯୋଗଜଗିଆ ଏକା ଥରକେ ଯାଇଛି ।

ଏଥର ଗୋପାଳ ଭଣ୍ଡ ସ୍ତ୍ରୀ ଆଦେଶ ପାଇ ଉଠିପଡ଼ି ଧୂଳି-ଗୁଣ୍ଡାକ ଝାଡ଼ିଝୁଡ଼ି ଦେଲ । ସ୍ତ୍ରୀ ତାର ପରିବାରକ ଘରକୁ ବୋହିବାରେ ଲଗିଥାଏ । ସେଦିନଠାରୁ ଦେଖାଯାଇଛି ସେ ଗାଁକୁ ଆସିଲେ, ଗୋପାଳର ସ୍ତ୍ରୀକୁ ଜୁହାରଟିଏ ହୋଇ ଦକ୍ଷିଣା ବାବଦକୁ କିଛି ପରିବା ଦେଇ ଅନ୍ୟଆଡ଼େ ବନ୍ଦି କରିବାକୁ ଯାଏ ।



## ଚଢ଼ୁଆ ଗୋଲମ

ଏକଦିନେ ରାଜା କୃଷ୍ଣଚନ୍ଦ୍ର ଜଣେ ବନ୍ଧୁର ଆମନ୍ତ୍ରଣ ରକ୍ଷା କରିବା ଉଦ୍ଦେଶ୍ୟରେ ଗୋପାଳକୁ ସାଙ୍ଗରେ ନେଇ ଗଲେ । ମାଘ ମାସରେ ବାଘପର ଜାଡ଼ ପଡ଼ୁଥାଏ । ଶୀତ ବାଉରୁ ରକ୍ଷା ପାଇବା ପାଇଁ ଗୋପାଳ ଖଣ୍ଡିଏ ରୁପା ଘୋଡ଼ାଇ ହୋଇଥିଲ । ତାଙ୍କର ଦେହେବ୍ର ସହିତ ତାଙ୍କର ଆଲୁଆନ ଖଣ୍ଡିକ ବେଶ୍ ସାଜୁଥାଏ । ଆମନ୍ତ୍ରିତ ଲୋକମାନେ ଗୋପାଳର ହାବଭାବ ଦେଖି ଠୋ ଠୋ ହସି ଉଠିଲେ । ଗୃହକର୍ତ୍ତା ହସଟାକୁ ଆହୁରି ଟିକିଏ ମଜା କରିବା ପାଇଁ ରସିକତା କରି କହିଲେ, ହେ ହେ ଗୋପାଳ ତୁମର ରୂପରେଖ ତ ଆଜି ବେଶ୍ ଚଢ଼ୁଆ ଗୋଲମ ପରି ଦେଖା ଯାଉଛି ?

ଗୃହକର୍ତ୍ତାଙ୍କ କଥା ଟା ସରିବା ମାତ୍ରେ ଲୋକମାନଙ୍କର ହସର ସୁଅ କ୍ଷିପ୍ରତର ହୋଇ ଉଠିଲ ; କିନ୍ତୁ ଗୋପାଳ ନ ହସି ଉତ୍ତରରେ କହିଲେ ଏଥିବାରେ ବଡ ବୁରୁଙ୍ଗ କରି ଗୋଲମକୁ ଧରିନଅ ।

ଲୋକମାନେ ଗୃହକର୍ତ୍ତାଙ୍କ କଥାରେ ଯେତେ ନ ହସିଲେ ଗୋପାଳର କଥାରେ ତାହାଠାରୁ ଅଧିକ ହସି ଉଠିଲେ । ଲଜ୍ଜାରେ ଗୃହକର୍ତ୍ତାଙ୍କ ମୁହଁ ଶୁଖିଗଲା ।

---*---

## ଗୋପାଳର ବନ୍ଧୁଙ୍କୁ ସାନ୍ତ୍ୱନା

ଗୋପାଳର ବିଚକ୍ଷଣ ବୁଦ୍ଧିରେ ରଜାରୁ ପ୍ରଜା, ଧନୀରୁ ଗରିବ ଯାଏ ସମସ୍ତେ ଠକିଯାଆନ୍ତି, କିନ୍ତୁ ଗୋପାଳ ଭଣ୍ଡକୁ କେହି ହେଲେ ଠକାଇ ପାରନ୍ତି ନାହିଁ ; ତେଣୁ ଗ୍ରାମ ଗୁଡ଼ିକର ଲୋକ ରାଗ କରି ତାକୁ ଠକାଇବା ପାଇଁ ପ୍ରତ୍ୟେକ ଦିନ ଚେଷ୍ଟା କରନ୍ତି ।

ଦିନେ ଗୋପାଳ ସଫା ଜାମା ଯୋଡ଼ ହୋଇ ସଭାକୁ ଯାଉ-ଥାଏ । ଗୁପ୍ତପଡ଼ାର ଲୋକେ ତାର ଭାବଭଙ୍ଗି ଦେଖି ସହ୍ୟ କରି ପାରିଲେ ନାହିଁ । ତାକୁ ଅପଦସ୍ତ କରିବା ପାଇଁ ସେ ମଧ୍ୟରୁ ଜଣେ ନିଜ ଦେହରେ କାଦୁଅ ଗୁଡ଼ିକ ବୋଳି ହୋଇ ଦଉଡ଼ି ପରି ଛୁଟି ଆସି ଗୋପାଳକୁ କୁଣ୍ଢାଇ ପକାଇ ମିଛଟାରେ କାନ୍ଦ କାନ୍ଦ କହିଲା, ମୋ ମା' କୁଆଡ଼େ ଗଲା । ହା, ହା, ହା, ହା, ମୁଁ ଏଣିକି କ'ଣ କରିବି କହ ।

ଲୋକଟି ଗୋପାଳ ଭଣ୍ଡକୁ କୁଣ୍ଢାଇ ଧରି ତାର ଲୁଗା ଜାମାରେ କାଦୁଅ ବୋଳିବା ଆଶାରେ ମିଛରେ ଛଳନା କରିବାକୁ ଲାଗିଲା । ଗୋପାଳ ତାର ବଦମାସି ଜାଣିପାରି ତାକୁ ଜବତ କରିବା ପାଇଁ ସେତିକିକ୍ଷଣି ପରିସ୍ତ୍ରା କଲା ଓ ପରିସ୍ତ୍ରାକୁ ବାମ ହାତରେ

ଧନ୍ଧ ଲୋକଟିର ମୁହଁକୁ ପାଣି ଗୁଡ଼ିଲ ପର ଗୁଡ଼ିଲା । ତା' ପରେ ବାଦସ୍ତାକୁ ଆଣି ତା'ର ମୁଣ୍ଡରେ ଥାପିଦେଇ କହିଲା—ତୁମ ଦୁଅ ଆଉ କାନ୍ଦ ଲାଭ କ'ଣ ? ତୋ ମୁଣ୍ଡ ଓ ମୁହଁରେ ଅନ୍ଧାପାଣି ଦେଲିଣି, ଏଥର ଶାନ୍ତ ହୋଇ ଘରକୁ ଯା ।

ମୂତଗୁଡ଼ାକ ଲୋକଟିର ପାଟିରେ ପଶିଯିବାରୁ ଥୁ ଥୁ ହୋଇ ପାଖଖଣ୍ଡ ଆଡ଼କୁ ଦୌଡ଼ିଲାବେଳେ କହୁଥାଏ—ତୁ ରହରେ ବଦମାସ ଭଣ୍ଡ । ମୋତେ ଯେପରି ମୂତ ଦେଇଛୁ, ମୁଁ ଦିନେ ସେହିପରି ଦେବି ।



## ରାଣୀଙ୍କର ଯାତ୍ରା ଦେଖା

କଥାରେ ଅଛୁ—ବାଉଁଶ ଯେତେ ମୋଟା ସେତେ ପୋଲ । ଯାହାର ଆୟ ଯେତେ, ତା'ର ବ୍ୟୟ ମଧ୍ୟ ସେତେ । ଏକଥା କେବେ ଅନ୍ୟଥା ନୁହେଁ । ଗୋପାଳ ଲୋକମାନଙ୍କୁ ଯେତେ ଭଣ୍ଡେଇ ରୋଜଗାର କରେ, ସେ ପଇସା ମଧ୍ୟ ଅସତ୍ ଉପାୟରେ ଖର୍ଚ୍ଚ ହୋଇଯାଏ । ସକାଳର ଆୟ ସଞ୍ଜକୁ ନାଅଣ୍ଟ । ଦିନେ ଗୋପାଳ ସକାଳୁ ଉଠି ଅଗାଧୂଆ ମୁହଁରେ ବସିଥାନ୍ତି । ଘରଣୀ କହି ପକାଇଲେ ଆଜ ତ ଘରେ କିଛି ନାହିଁ । ଆଜ ଦିନଟା କିପରି କଟିବ ? ସ୍ତ୍ରୀ କଥା ଶୁଣି ଗୋପାଳ ଟିକିଏ ଚିଡ଼ି ଉଠି କହିଲା—କାଲି ପରା ମୁଁ ତୁମ ହାତରେ ଶହେ ଟଙ୍କା ଦେଇଥିଲି । ଗୋଟିଏ ଦିନରେ କ'ଣ ସବୁ ଖତମ ? ସ୍ତ୍ରୀ ତାର ଉତ୍ତର ଦେଲା—ସେ କଥା ଗୁଡ଼ାକ ମୋତେ କହନାହିଁ । ଶହେ ଟଙ୍କା ଦେଇ ଦୁଇଶହର ଜବାବ

ନେବ । ଟଙ୍କା ସରିଗଲେ ପୁଣି ଘରଘର ଭାଙ୍ଗିବ ? ମୁଁ ଟଙ୍କା ରଖିବ ନାହିଁ କି ଏତେ ହିସାବ ଦେଇପାରିବ ନାହିଁ । ମା' ଲୋ ମା ମୁଁ ସବୁ ଆଜ କାହାପାଇଁ ପାଞ୍ଚଖଣ୍ଡ ପିନ୍ଧି ଥାନ୍ତି ପାଞ୍ଚମାଳ ଗହଣା ଗଣ୍ଡି ହାଉଥାନ୍ତି, ଏ ଘରେ ଆଉ ବାସ ମିଳନ୍ତା ନାହିଁ ।

ସ୍ତ୍ରୀ ତା'ର ଏତକରେ ମୁହଁଟାକୁ ହାଣ୍ଡି ପରି କରି ଆଉ ଘରକୁ ଚାଲିଗଲା । ସ୍ତ୍ରୀର ଏପରି ବ୍ୟବହାର ଦେଖି ଗୋପାଳ ଚିନ୍ତା କଲା— ଆଜିଦିନଟି କିପରି କଟିବ କେଜାଣି ? କାଲି ତ ରାଜା ମୋତେ ଶହେଟଙ୍କା ଦେଇଛନ୍ତି, ଆଜି ତାଙ୍କୁ କେଉଁ ଅକଲଙ୍କ ମୁହଁରେ ମାଗିବି ? ସେ ବା ମୋତେ କେଉଁ ହିସାବରେ ଦେବେ ? ପୁଣି ଆଉ କେଉଁଠାରେ ମୋଟା ଆକାର ଟଙ୍କା ମୋତେ ମିଳିବ ? ଯାହାହେଉ ଆଜି ଯାଉଛି । କୌଣସି ଉପାୟରେ ନିଜର ବୁଦ୍ଧି ଖଟାଇ ରାଜାଙ୍କ ପାଖରୁ ନହୁବା ରାଣୀଙ୍କ ପାଖରୁ ଆଣିବାକୁ ପଡ଼ିବ । ଯଦି କିଛି ଭଗବାନଙ୍କ ଦୟାରୁ ମିଳିଯାଏ ତ ଆଜି ଦିନକ ଚଳିଯିବ ।

ଏହିପରି କଥା ମନାସି ଗୋପାଳ ବେଳାବେଳି ନିତ୍ୟକର୍ମ ଶେଷ କରି ଦେଲା । ଏଣୁ ତେଣୁ ଦି'ଟା ଭୁଞ୍ଜିଦେଇ ନିଜର ପୋଷାକ ପତ୍ର ପରିଧାନ କରି ରାଣୀ ମା'ଙ୍କ ଉଆସଗାମୀ ହେଲା । ରାଣୀ ତାକୁ ଦେଖି ପଚାରିଲେ—କି ଗୋପାଳ ! କେଉଁ ଦିଗରେ ସୂର୍ଯ୍ୟଦେବ ଉଦିତ ହେଲେ, ଏତେ ବେଳାବେଳି କ'ଣ ? ଗୋପାଳ ଲମ୍ବାଚଉଡ଼ା ନମସ୍କାରଟି ବଜାଇ କହିଲା— ରାଣୀ ମା ! ଆଜି ପରା ମହାନନ୍ଦ ଗ୍ରାମରେ ଭିନଦିନ ଧରି ଗୋଟିଏ ମହାଯାତ୍ରା ମହା ସମାରୋହରେ ହେଉଛି । ତାହାର ଦର୍ଶନାର୍ଥେ ଆମ୍ଭେ ସପରିବାରେ ବାହାରିଅଛୁ । ସେଥିପାଇଁ କିଛି ଖର୍ଚ୍ଚ ପାଇବା ଆଶାରେ ଚାଲିଆସିଲି ।

ଗୋପାଳର କଥା ଶୁଣି ରାଣୀ ମା ହସି ହସି ବଦନରେ ଆରମ୍ଭ କଲେ—ତାହେଲେ ତୁମେ ଯାତ୍ରା ଦେଖିଯିବ, ନୁହେଁ ? ଅଚ୍ଛା ସେ ଯାତ୍ରା କପରି ଭାବେ ହସେ କହିଲ ?

ରାଣୀଙ୍କର କଥା ଶୁଣି ଗୋପାଳ କହିଲେ—ରାଣୀମା ! ସେ ଯାତ୍ରାର ମାହାତ୍ମ୍ୟ କ'ଣ କହିବି ? ଏ ଯାତ୍ରା ଦୁନିଆରେ ଦେଖିବାକୁ ଭିରଳ । ଏ ଯାତ୍ରା ପର ଯାତ୍ରା ନୁହେଁ ଏହାକୁ ଦେଖିଲେ କେଉଁ ଲୋକର ଆଖି ଲାଖି ନ ରହିବ ? ଏହି ଯାତ୍ରାର ଦର୍ଶନାର୍ଥେ ଲୋକମାନେ ନାନା ଆଡ଼ୁ ଆସି ଏକଜ ହୁଅନ୍ତି । ରାଣୀ ମା' ଖୁବ୍ ସମ୍ଭ୍ରାନ୍ତ ବଂଶୀୟା ସ୍ତ୍ରୀମାନେ ଏପରି କ ରାଜା-ମନ୍ତ୍ରୀମାନେ ମଧ୍ୟ ଆସନ୍ତି । ବହୁ ପ୍ରକାର ଜନଷର କଣାଢକା ହୁଏ । ଏ କାର୍ଯ୍ୟବ୍ୟସ୍ତ ଜୀବନରେ ଅନ୍ତତଃ ଥରେ ମାତ୍ର ଏ ଯାତ୍ରାର ଶୋଭା ଉପଲବ୍ଧି କରିବା ଉଚିତ ।

ଯାତ୍ରାର ବର୍ଣ୍ଣନା ଶୁଣି ରାଣୀଙ୍କର ମନ ବ୍ୟସ୍ତ ହୋଇ ଉଠିଲା । ସେ ଯିବାପାଇଁ ଗୋପାଳ ଭଣ୍ଡକୁ କହିଲେ । ଗୋପାଳ ତର୍କିଟରେ ରାଜହୋଇ ରାଜାଙ୍କ ପରାମର୍ଶ ପାଇଁ ଉପଦେଶ ଦେଲେ । ରାଣୀ ତା ହାତରେ ଯାତ୍ରା ଖରଚ କରିବା ଲାଗି କୋଡ଼ିଏ ଟଙ୍କା ଦେଇ କହିଲେ—ତୁମେ ଏହାକୁ ଘରେ ଦେଇ ଏହିବାଟେ ଆସିଲେ ଆମେ ଦୁହେଁ ଯିବା । ଗୋପାଳ ହଉ ବୋଲି କହି ଚାଲିଗଲା । ରାଣୀ ରାଜାଙ୍କ ନିକଟରେ ଯାତ୍ରା ଦେଖିଯିବାକୁ ଗୁହାରି କଲେ । ରାଜା ଯେତେ ମନାକଲେ ରାଣୀ ତାହା ମାନିଲେ ନାହିଁ ।

ଶେଷରେ ଗୋପାଳକୁ ସାଙ୍ଗରେ ନେଇ ଯିବାକୁ ସ୍ଥିର କରାଗଲା । ରାଣୀଙ୍କୁ ପ୍ରସ୍ତୁତ ହେବାକୁ କହି ରାଜା ମନ ଦୁଃଖରେ

ବସିଲେ । ସେତିକବେଳେ ପାଣି ଲଗା ଗୋପାଳ କିଛି ନଜାଣିଲା ପରି ଆସି ରାଜାଙ୍କୁ ନମସ୍କାର କଲେ । ରାଜା ତାଙ୍କୁ ଦେଖି କହିଲେ—ଗୋପାଳ ଆଜ ତୁମେ ମୋର ଗୋଟିଏ ଉପକାର କଲେ ମୁଁ ତୁମର ବାସନା ପୂର୍ଣ୍ଣ କରିବ । ଗୋପାଳ ଉଦ୍‌ବେଗ ହୋଇ ପଚାରିଲେ—କି ଉପକାର ଆଜ୍ଞା ?

ଗୋପାଳ ଏପରି ଘଟଣା କରିଛି ବୋଲି ତ ଆଉ ରାଜା ଜାଣି ନାହାନ୍ତି । ସେ ଗୋପାଳକୁ ବିଶ୍ୱାସ କରି କହିଲେ—ଆଜ ରାଣୀ ଯାହା ଦେଖି ବାହାରିଛନ୍ତି । ମୁଁ ଯେତେପ୍ରକାର ବୁଝାଇଲେ ମଧ୍ୟ ସେ ଆଦୌ ବୁଝୁ ନାହାନ୍ତି । ତୁମେ ତାଙ୍କୁ କୌଣସି ପ୍ରକାର ବନ୍ଧ କରି ପାରିବ କି ?

ରାଜାଙ୍କ କଥା ଶୁଣି ଗୋପାଳ ଟିକଏ ସହାସ୍ୟ ବଦନରେ କହିଲେ, ଏହି ସାମାନ୍ୟ କଥା ଉପରେ ଆପଣ ଏତେ ବ୍ୟସ୍ତ ହେଉଛନ୍ତି ? ଆପଣ ଏହିଠାରେ ବସିଥାନ୍ତୁ - ମୁଁ ଏହିକ୍ଷଣି ରାଣୀ ମା'ଙ୍କୁ ଯାହା ଦେଖିବା ପଥରୁ ଫେରାଇ ଆଣୁଛି । ରାଜା କହିଲେ, ଅଚ୍ଛା ଯାଆନ୍ତୁ । ତାଙ୍କୁ ସେ ପଥରୁ ଫେରାଇ ଆଣିଲେ ମୁଁ ତୁମକୁ ଆଶାଡତ ପୁରସ୍କାର ଦେବ ।

ଗୋପାଳ ସେଠାରୁ ଚାଲିଗଲେ । କିଛିକ୍ଷଣ ପରେ ପିଠି ପାଖରେ ଡାଲେ କଣ୍ଟା ବାନ୍ଧି ରାଣୀଙ୍କ ପାଖରେ ପହଞ୍ଚିଲେ, ରାଣୀ ମା ଏତେବେଳଯାଏ କ'ଣ ସଜବାଜ ହୋଇ ନାହାନ୍ତି ? ବେଳ ଉଛୁର ହେଲାଣି, ଶୀଘ୍ର ଆସନ୍ତୁ ଯିବା ।

ପିଠି ପାଖରେ କଣ୍ଟାମାନ ଝୁଲୁଥିବାର ଦେଖି ରାଣୀ ପଚାରିଲେ—ଭାଣ୍ଡ ! ତୁମର ପୁଣି ଏ କି ବେଶ ! ପିଠିରେ କଣ୍ଟା

ବାନ୍ଧଛ କାହିଁକି ? ଗୋପାଳ ଉତ୍ତର ଦେଲା—ଏହାପରି ବେଶ ଆପଣଙ୍କର ବି ପ୍ରୟୋଜନ । ମୁଁ ଏଠାକୁ ଆସିବା ପୂର୍ବରୁ ମୋର ଗୁଳଚଙ୍କୁ କଣ୍ଠି କାଟିବାକୁ କହି ଆସିଥିଲି । ସେ ବୋଧେ ବର୍ତ୍ତମାନ ଆସି ପହଞ୍ଚିବ ।

ତା କଥା ଶୁଣି ରାଣୀ ଚମକି ପଡ଼ି କହିଲେ—ମୁଁ କାହିଁକି କଣ୍ଠି ବାନ୍ଧିବି ?

ତହୁଁ ଗୋପାଳ ଉତ୍ତର ଦେଲା, କଣ୍ଠି ନ ବାନ୍ଧିଲେ ସେ, ଲୋକ ଦେହରେ ହାତ ଲଗାଇ ଦେବେ ।

ରାଣୀ ଆହୁରି ଆଶ୍ଚର୍ଯ୍ୟ ହୋଇ କହିଲେ—ମୁଁ ରାଣୀ, ପୁଣି ମୋର ଯିବା ପଦବ୍ରଜରେ ନୁହେଁ । ମୁଁ ତ ପାଲିଙ୍କିରେ ରହିବି ମୋତେ ଛୁଇଁବ କିଏ ? ଗୋପାଳ ଆହୁରି ଟିକିଏ କଥା ଲମ୍ବାଇ କହିଲା—ତାହା କିପରି ହେବ ରାଣୀ ମା ! ମୁସଲମାନମାନଙ୍କର ଆଦେଶ ଯେ, ସେ ଯାତ୍ରାର ଯାତ୍ରୀମାନେ କୌଣସି ଯାନବାହନ ବ୍ୟବହାର କରିପାରିବେ ନାହିଁ । ତାହାଛଡ଼ା ସେଠାକାର ବଦମାସ ଗୁଣ୍ଡାଦଳ, ବିଶେଷ କରି ବଡ଼ଘରର ଝିଅ ବୋହୂଙ୍କ ଦେହରେ ହାତ ଲଗାଇଥାନ୍ତି । କାହାର ଆଶା ଗହଣା ଉପରେ ବା କାହାର ଆଶା ଖରାପ ଉଦ୍ଦେଶ୍ୟ ନେଇ ; ତେଣୁ ତାଙ୍କ ହାତରୁ ରକ୍ଷା ପାଇବାକୁ ହେଲେ କଣ୍ଠି ବାନ୍ଧିବା ଏକାନ୍ତ ପ୍ରୟୋଜନ ।

ଏ କଥା ରାଣୀଙ୍କ କର୍ଣ୍ଣପାତ ହେବାକ୍ଷଣି ରାଣୀଙ୍କର ମନ ସେ ବାଟରୁ ଫେରି ଆସିଲା । ସେ କହିଲେ—ମୁଁ ଯିବି ନାହିଁ ।

ଆମମାନଙ୍କ ଭଳି ପରିବାରର ଝିଅ ବୋହୂଙ୍କର ପାଦ ଯେମନ୍ତ ଯାହାରେ ପଡ଼ିବା ଉଚିତ ନୁହେଁ ।

ଗୋପାଳ ଖୁସି ହୋଇ ରାଜାଙ୍କପାଖରେ ସବୁ କଥା କହି-ଦେଲେ । ଗୋପାଳର ଏହିପରି ଚତୁରତା ଯୋଗୁଁ ସେ ରାଜାଙ୍କ-ଠାରୁ ଶହେଟଙ୍କା ପୁରସ୍କାର ପାଇଲା ।

···*···

## ତୁଳସୀ ଗଛ

ଏକଦିନେ ରାଜା କୃଷ୍ଣଚନ୍ଦ୍ର ସଭା କରି ବସିଥାନ୍ତି । ସେତିକି-ବେଳେ ଗୋପାଳ ଭଣ୍ଡ ଗଳା ଚୈତନ୍ୟ ହୋଇ ବେକରେ ରୁଦ୍ରାକ୍ଷ ମାଳ ପକାଇ ରାଜସଭାରେ ଉପସ୍ଥିତ ହେଲେ । ତାହାର ପରିଧାନକୁ ଲକ୍ଷ୍ୟ କରି ସଭାସଦ୍‌ମାନେ ହସି ଉଠିଲେ । ରହସ୍ୟ କରି ରାଜା ପଚାରିଲେ ଏ କ'ଣ ଗୋପାଳ ? ତୁମଭ ଆଜ ଏ କ'ଣ ନୂତନତ୍ୱ ? ତୁମର ବେଶ ଭୂଷା ତ ତୁଳସୀଗଛ ବୋଲି ସୂଚୁଛି ଦେଉଛି । ରାଜାଙ୍କର ଏ କୌତୁକ ପୂର୍ଣ୍ଣ ବାକ୍ୟ ଶୁଣି ସଭାର ଲୋକମାନେ ହସର ଲହରି ଛୁଟାଇଦେଲେ ; ତେଣୁ ଗୋପାଳ ଭଣ୍ଡ କାହାରିକୁ କିଛି ନ କହି ଫେରିପଡ଼ି ଯିବାକୁ ଉଦ୍ୟତ ହେଲେ ।

ଗୋପାଳ ଫେରି ଯିବାର ଦେଖି ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ···ଫେରି ଯାଉଛ କ'ଣ ? ତୁମେ ମୋ କଥାରେ ରାଗିଗଲ ? ଗୋପାଳ ମୁହଁ ଫେରାଇ କହିଲା--ମୁଁ ରାଗ କରି ପଳାଇ ଯାଉନ ଯେ, ଭୟରେ ପଳାଇ ଯାଉଛି , କାରଣ ତୁଳସୀ ଗଛ

ଦେଖିଲେ କୌଣସି ପ୍ରାଣୀର ପ୍ରସାବ କରିବାକୁ ପ୍ରାଣଟା ଛଟପଟ କରେ ; ତେଣୁ ଏଥିରୁ ମୁଣ୍ଡଟିକୁ ରକ୍ଷା କରିବାକୁ ଯାଇ ମୁଁ ପଳାଇ ଯାଉଛି; ତାହା ନ ହେଲେ ହୁଏତ କେହି ମୋ ମୁଣ୍ଡ ଉପରେ ପ୍ରସାବ କରି ପକାଇବେ ।

ଏକଥା ଶୁଣି ଆହୁରି ଆନନ୍ଦରେ ମୁଖରିତ ହୋଇ ଉଠିଲା— ରାଜା ହସି ହସି କହିଲେ—ଗୋପାଳ, କୁକୁରର ଗୋଟିଏ ରୋଗ ଅଛି । ସେ ତୁଳସୀ ଗଛ ଦେଖିଲେ ପରିସ୍ରା କରିବାକୁ ମନବଳାଏ । ତେବେ ଆମେ କ'ଣ କୁକୁର ?

—*—

## ମାଛି ସନ୍ଦେଶ ଖାଉଛି

ଗୋପାଳ ଭଣ୍ଡ ପଣରେ ଯେପରି ଧୁରନ୍ଧର, ପେଟୁପଣରେ ମଧ୍ୟ ତଦ୍ରୂପ । ଥରେ ସେ ଦ୍ୱିପ୍ରହରବେଳେ ତାର ବନ୍ଧୁ ଘରୁ ନିଜ ଘରକୁ ପ୍ରତ୍ୟାବର୍ତ୍ତନ କଲାବେଳେ ବାଟରେ ଗୋଟିଏ ଗୁଡ଼ିଆ ଦୋକାନ ତା'ର ନଜରକୁ ଆସିଲା । ଦେଖିଲା ସେ ବଡ଼ ବଡ଼ ଥାଳରେ ବହୁତ ଗୁଡ଼ିଏ ସନ୍ଦେଶ ଖୁବ୍ ସୁନ୍ଦର ଭାବେ ସଜାହୋଇ ରଖାଯାଇଛି । ଆହୁରି ମଧ୍ୟ ଜଲବି, ମିଠାଇ ପ୍ରଭୃତି ସଜାହୋଇ ରଖାଯାଇଛି । ଦୋକାନରେ ୭।୮ ବରଷର ପିଲାଟି ବ୍ୟତୀତ ଆଉ କେହି ନଥାନ୍ତି ।

ସନ୍ଦେଶ ଥାଳି ଦେଖି ଗୋପାଳ ଲୋଭ ସମ୍ଭାଳି ପାରିଲାନାହିଁ । ସେ କାଳ ବିଳମ୍ବ ନ କରି ପିଲାଟିକୁ ଯାଇ ପଚାରିଲା, ତୋର ବାପା କେଉଁଆଡ଼େ ଯାଇଛି ? ପିଲାଟି କହିଲା ଘର ଭିତରେ ଭାତ

ଖାଉଛନ୍ତି । ପୁଣି ଗୋପାଳ ପ୍ରଶ୍ନ କଲା କେତେବେଳେ ଖାଇବାକୁ ଗଲେ ? ପିଲାଟି କହିଲା -ଏଇ ଅଳ୍ପ ସମୟ ହେଲା ଗଲେ । ଗୋପାଳ କହିଲା -ବେଶ୍ ତ ବାପା ତୋର ଭାତ ଖାଉଛନ୍ତି, ମୁଁ ସନ୍ଦେଶ ଖାଉଛି ।

ଗୋପାଳ କାଳ ବିଳମ୍ବ ନ କରି ଦୁଇଗୋଟି ସନ୍ଦେଶ ଆଣି ତାର ହାତରୁ ଗ୍ରହଣ କଲା । ପିଲାଟି ଆଶ୍ଚର୍ଯ୍ୟ ହୋଇ ରାଗରେ ପଚାରିଲା ତୁ କଏବେ, ପଇସା ନ ଦେଇ ସନ୍ଦେଶ ଖାଉଛୁ ! ମୋ ବାପା ଦେଖିଲେ ମୋତେ ମାରିବ ।

ପିଲାଟିର କଥା ଶୁଣି ଗୋପାଳ କହିଲା—ନା ରେ, ତୋ ବାପା ତୋତେ କାହିଁକି ମାରିବ ? ସେ ପରା ମୋତେ ଚିହ୍ନନ୍ତି । ମୁଁ ପରା ଦୈନିକ ଆସି ସନ୍ଦେଶ ଖାଏ । ମୋ ନା ପରା ମାଛି ।

ଗୋପାଳର କଥା ଶୁଣି ପିଲାଟି କହିଲା—ଆଚ୍ଛା ତୁ ଏଇଠି ଥା, ମୁଁ ଯାଉଛି ବାପାକୁ ପଚାରି ଆସେ ।

ଗୋପାଳ କହିଲା ମୁଁ ଖାଉଥାଏ, ତୁ ଏଇଠୁ ଥାଇ ତୋ ବାପାକୁ ପଚାରୁନୁ ।

ଗୋପାଳ ଏକଥା କହୁ କହୁ ସନ୍ଦେଶ ଖାଇବା ଆରମ୍ଭ କରି ଦେଲା । ପିଲାଟି ଆଉ ସହ୍ୟ କରି ନପାରି ତା ବାପାକୁ ଡାକ ପକାଇଲା ବାପା, ମାଛି ସନ୍ଦେଶ ଖାଇ ଯାଉଛି । ବାପା ମନେ ମନେ ଚିନ୍ତା କଲା, ଶଳା ମାଛିଗୁଡ଼ାକ ତ ନିତ ଖାଆନ୍ତି । ହୁଏ ତ ଆସି ବସିଥିବେ ; ତେଣୁ ପୁଅଟା ଡାକ ପକାଉଛି ।

ଦୋକାନୀ ଏହା ଭାବ ମାଛି ମନେକରି ପୁଅକୁ ଡାକି କହିଲା—ହଁ, ସେ ମାଛି ନଡ଼ ଆସି ଖାଏ । ଆଜ ଖାଉଛି ଖାଉ । ତୁ ତାକୁ କିଛି ନକହି ମୁଁ ଯିବାଯାଏ ଦୋକାନ ଜଗିଥା ।

ବାପର କଥା ଶୁଣି ପିଲାଟି ଆଉ ଗୋପାଳକୁ କିଛି ନ କହି ଚୁପ ରହିଲା । ଗୋପାଳ ଆନନ୍ଦରେ ଗୋଟିଏ ପରେ ଗୋଟିଏ ସନ୍ଦେଶ ଖାଇ ଥାଳ ଖାଲି କରି ଦେଲେ । ଦୋକାନୀ ଆସିବାର ସମୟ ହେବାରୁ ସେ ସେଠାରୁ ଖସି ଚାଲିଗଲେ । କିଛି ସମୟ ପରେ ଦୋକାନୀ ଆସି ଦେଖିଲା ତାର ସନ୍ଦେଶ ଥାଳ ଖାଲି ପଡ଼ିଛି । ସେ ନଥ କରି ଭୂଇଁ ଉପରେ ବସିପଡ଼ିଲା ଏବଂ ପୁଅକୁ ଧମକାଇ ପଚାରିଲା, ସନ୍ଦେଶ ଥାଳଟା କ'ଣ ହେଲା ?

ପୁଅ ଭୟରେ ଡରି ଡରି କହିଲା, ମାଛି ଖାଇଗଲା । ଦୋକାନୀ ରାଗରେ ଜଳି ଉଠି କହିଲା—ମାଛି କ'ଣ ଥାଳଟାଯାକ ସନ୍ଦେଶ ଖାଇଗଲା ? ପିଲାଟି ଉତ୍ତର ଦେଲା ହଁ । ମୁଁ ପଚାରିଲି, ତୁମେ କହିଲ ସେ ନଡ଼ ଆସି ଖାଏ, ଖାଉ । ଦୋକାନୀ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, ଆରେ ସେ କେମିତିକା ମାଛି ? ପିଲାଟି କହିଲା—ଟାଙ୍ଗରା ମୁଣ୍ଡିଆ ବାଙ୍ଗରାଟିଏ, ଦେଖିବାକୁ ଠିକ୍ ଗଣେଶ ପରି ପେଟା ।

ପୁଅର କଥା ଶୁଣି ଦୋକାନୀ ବିଚରାର ଆଉ ରାହା କ'ଣ ? କୌଣସି ଧର ହାର ତ ଏହା ସମ୍ଭବ । ମୁଁ ପୁଅକୁ ମାରିଲେ ଫଳ କ'ଣ ? ଏହା କେବଳ ତାର ଦୋଷ ନୁହେଁ, ମୋର ମଧ୍ୟ ଏଥିରେ ଦୋଷ ଅଛି । ଏହା ଭାବି କାନ ମୁଣ୍ଡା ଆଉଁଷି ରହିଲା ।

—*—

## ଆମ ରାଜାଙ୍କ ହୁକୁମ

ଗୋପାଳ ଭଣ୍ଡର ଭଣ୍ଡାମି ପଣିଆ ଆସ୍ତେ ଆସ୍ତେ ଦେଶରୁ ବିଦେଶ ଯାଏ ଖେଳିଗଲା । ସେ ସମସ୍ତଙ୍କୁ ଠକାଏ ଏବଂ ଉପସ୍ଥିତ ବୁଦ୍ଧିରେ ଉତ୍ତର ଦିଏ ; କିନ୍ତୁ ତାକୁ କେହି ହେଲେ ଠକାଇ ପାରନ୍ତି ନାହିଁ । ତାର ହାସ୍ୟ କୌତୁକ ଓ ଥଟ୍ଟା ତାମସା ଶୁଣିବା ଲାଗି ନାନା ଆଡ଼ୁ ଖବର ଆସେ । ଗୋପାଳ ସବୁ ଆଡ଼କୁ ଯାଏ । ସବୁଆଡ଼େ ମଧ୍ୟ ସୁନାମ ପାଏ ।

ଦିନେ ଗୋଟିଏ ଜମିଦାର ଘରେ କୌଣସି ପୂଜା ଉପଲକ୍ଷେ ଖବର ଆସିଲା । ଗୋପାଳ ଘରଠାରୁ ଜମିଦାର ଘର ଅନେକ ଗୁଡ଼ାଏ ବାଟ । ଗୋପାଳ ସେଦିନ ସେଠାରେ ଯାଇ ଦେଖିଲା ଯେ, ଲୋକ ଗହଳଚହଳରେ ବାଟ ମିଳୁନି । ରାସ୍ତା ଜନ କୋଳାହଳରେ ପୂର୍ଣ୍ଣ । ଲୋକ ଆସିବା ଯିବା ଲାଗିଛି ।

ଗୋପାଳ କାହାରିକୁ କିଛି ନ କହି ଲୋକମାନଙ୍କ ଭିଡ଼ ଭିତରେ ଯାଇ ଆଗେ ଜମିଦାରଙ୍କୁ ସାକ୍ଷାତ କଲା । ଜମିଦାର ଗୋପାଳର ସୁନାମ ଶୁଣି ଖବର ଦେଇଥିଲେ ସତ ; କିନ୍ତୁ ତାର ଏପରି ଚେହେରା ଦେଖି ସେପରି କିଛି ଖାତିର କଲେ ନାହିଁ । କେବଳ ଭଦ୍ରତା ଦୃଷ୍ଟିରୁ ଅନ୍ୟମାନଙ୍କ ଖାଦ୍ୟ ପାନୀୟର ବ୍ୟବସ୍ଥା କରିଦେଲେ । ଜମିଦାରଙ୍କ ମନୋଭାବ କେହି ନ ଜାଣିଲେ ମଧ୍ୟ ଚତୁର ଗୋପାଳକୁ ଅଜଣା ରହିଲା ନାହିଁ । ସେ ଭାବିଲେ ବାଘ ହାଇରାଣରେ ପଡ଼ିଲେ ଛେଳି ତା ଉପରକୁ ନୃତ୍ୟ କରିଥାଏ । ଆଜ ମୋର ଦଶା ସେଇଆ । ଦେଖାଯାଉ କ'ଣ ଘଟୁଛି ।

ଗୋପାଳ ଏହିକଥା ଚିନ୍ତାକରି ଖାଇପିଇ ଟିକିଏ ବିଶ୍ରାମ ନେଲା ମନଟା ବିପରି ଗୋଳେଇ ଘାଣ୍ଟି ହେଉଥାଏ । ଖାଇବାରେ ମଧ୍ୟ ଠିକ୍ ନଥିବାରୁ ପେଟ ମଧ୍ୟରୁ ବାଇ ଉପରକୁ ଉଠୁଥାଏ । ଗୋଟାକ ପରେ ଗୋଟାଏ ଗୁଳବ୍ଲେଟ ପରି ପବନ ଛୁଟୁଥାଏ । ସେହି ସମୟରେ ଜମିଦାର ସମସ୍ତ କାର୍ଯ୍ୟ ସମାପନ କରି ସଭା ଆରମ୍ଭ କରି ବସିଲେ ସଭାରେ ବଶିଷ୍ଟ ଭଦ୍ରବ୍ୟକ୍ତିମାନେ ଆସି ନିଜ ନିଜର ସ୍ଥାନ ଅଳଂକୃତ କରିନେଲେ । ଗୋପାଳ ଭଣ୍ଡଙ୍କୁ ମଧ୍ୟ ଯଥାବିଧି ଆସନ ଗ୍ରହଣ କରିବାକୁ କହିଲେ । ସଭାସଦମାନେ ଗୋପାଳର ପରିଚୟପାଇ ତାର ମୁହଁକୁ ଚାହିଁ ବସିଥାନ୍ତି । ଜାଣିଥିବା ବ୍ୟକ୍ତିମାନେ ଅଜଣା ଲୋକଙ୍କୁ ତା'ର ଗୁଣଗ୍ରାମ ବଖାଣୁ ଥାନ୍ତି ।

କିଛି ସମୟ ପରେ ସଭାଟି ନିସ୍ତବ୍ଧ ହୋଇଗଲା । କୌଣସି ଆଲୋଚନା ହେବା ପୂର୍ବରୁ ଗୋପାଳ ଅତର୍କିତ ଭାବେ ଏପରି ଗୋଟେ ଡୋ କରି ପାଦିଲେ ଯେ, ସଭାଲୋକ ଚମକି ପଡ଼ି ଗୋପାଳ ଆଡ଼କୁ ଅନାଇଲେ । ତାହା ସାଙ୍ଗେ ସାଙ୍ଗେ ଆଉ ଗୋଟିଏ ପାଦ ଗ୍ଲେଟକରି ବାହାରି ଆସିଲା । ସଭାରେ ଉପସ୍ଥିତ ଭଦ୍ରବ୍ୟକ୍ତିମାନେ ନାକରେ ହାତ ଦେଇ ଗୋପାଳକୁ ଛି ଛିକର କରି ନାନାଭି କଟୁକଥା କହିବା ସଙ୍ଗେ ସଙ୍ଗେ ଥଟ୍ଟାକରି କହିଲେ ; କିନ୍ତୁ ଗୋପାଳ କାହାରିକୁ କିଛି ନ କହି ଯିବାକୁ ବାହାରିଲା ।

ଜମିଦାର ଭାବିଲେ, ଗୋପାଳ ଲଜ୍ଜା ଓ ଅପମାନବଶତଃ ପଳାଇ ଯାଉଛି ; ତେଣୁ ତାକୁ ସାନ୍ତ୍ୱନା ଦେଇ କହିଲେ— ଗୋପାଳ ! ଏତେବଡ଼ ସଭାଟାକୁ ଭଙ୍ଗକରି ଦେଉଛ ? ଲୋକବାକ କଥା, କେତେବେଳେ କାହା ମନରେ କ'ଣ ଅଛି । କାହା

ଶରୀରରେ କେତେବେଳେ କ'ଣ ଘଟୁଛି କଏ କହି ପାରିବ । ତୁମେ ପଥକ୍ଲାନ୍ତ ହୋଇ ଆସିଥିଲ, କ'ଣ ବ'ଠା ପେଟରେ ପଡ଼ି ଯିବାରୁ ପେଟଟା ବାଇଦୋଷ ଧରି ପକାଇଲା ; ତେଣୁ ବ'ଠା ବାୟୁ ଛାଡ଼ିଦେଲ । ହୁଏ ତ ସେଇଥିପାଇଁ ଲୋକେ ହସି ଦେଇଛନ୍ତି ଏଇ କଥାକୁ ଏତେ । ସେଥିଲାଗି ଅପମାନ ଗୋଟାଏ କ'ଣ ? ଏଥର ବସ ।

ଜମିଦାରଙ୍କ କଥାରେ ଗୋପାଳ ଅତି କରୁଣ ସ୍ୱରରେ କହିଲା ନା ଆଜ୍ଞା ! ମୋର ପେଟ କୌଣସିମତେ ଖରାପ ହୋଇ ନାହିଁ । ଏହାର କାରଣ ହେଉଛି ଯେ— ଆମର ରାଜା କୃଷ୍ଣଚନ୍ଦ୍ରଙ୍କ ଆଜ୍ଞାକୁ ପାଳନ କରିବାକୁ ଯାଇ ମୁଁ ଏହା କରିଛି । ଗୋପାଳର କଥାରେ ସମସ୍ତେ ସ୍ତମ୍ଭୀଭୂତ ହୋଇଗଲେ । ଜମିଦାର ଆଶ୍ଚର୍ଯ୍ୟ ହୋଇ ପଚାରିଲେ —କ'ଣ ତୁମେ ରାଜାଙ୍କ ଆଜ୍ଞାକୁ ପାଳିଛ ଗୋପାଳ !

ଗୋପାଳ ଉତ୍ତର ଦେଲା—ଏହା ଆମ ରାଜାଙ୍କ ଆଦେଶ । ଯେଉଁ ସ୍ଥାନରେ ସମ୍ମାନ ନ ମିଳେ, ସଭାରେ ଥାଇ ଲୋକମାନେ ମିଥ୍ୟା କହୁଥିବେ, ନ୍ୟାୟ ପରିବର୍ତ୍ତେ ଅନ୍ୟାୟ ବିଚାର ହେଉଥିବ ଯେଉଁ ସଭାରେ ମାଙ୍କଡ଼ ହସ୍ତରେ ଶାଳଗ୍ରାମ ଦେଲାଭଳି ଉଚ୍ଚ ନୀଚର ଭେଦାଭେଦ ଥିବ, ସେ ସଭା ପ୍ରତ୍ୟାଖ୍ୟାନ କରି ତୁ ପଳାଇ ଆସିବୁ; ତେଣୁ ମୁଁ ମୋର ରାଜାଙ୍କ ହୁକୁମ ପାଳିବାକୁ ଯାଇ ସଭାରେ ପାଦ୍ଦେଇ ଯାଉଛି ।

ଗୋପାଳ ଭଣ୍ଡ ଏହାକହି ପଳାଇ ଆସିଲା । ଜମିଦାର ବାବୁ ଅପମାନରେ ମୁହଁ ତଳକୁ କଲେ । ଅନ୍ୟ ଲୋକମାନେ ମରଦ ରହି ଗୋପାଳର ଯୁକ୍ତିଯୁକ୍ତ କଥାକୁ ଚିନ୍ତା କରିବାକୁ ଲାଗିଲେ ।

—o—

## ଆକାଶରେ ତାରା କେତେ

ଥରେ ରାଜା କୃଷ୍ଣଚନ୍ଦ୍ର ଗୋଟିଏ ଚିଠି ପ୍ରାପ୍ତ ହୋଇ ପାଠ କରିବାକୁ ଲାଗିଲେ । ଚିଠି ଖଣ୍ଡିକ ନବାବଙ୍କ ଦରବାରରୁ ଆସିଥିଲା ଚିଠିଟି ପାଠକରି ସାରିବା ପରେ ଜାଣିଲେ ଯେ, ସେଥିରେ ଲେଖାଅଛି ଆକାଶରେ ତାରା କେତେ ? ଏହା ଯଦି ଗଣନା କରି ନ ପାର, ତା'ହେଲେ ପରିଣାମ ବିଶେଷ ଖରାପ ହେବ । ଏ କଥା ଜାଣି ରାଜା କୃଷ୍ଣଚନ୍ଦ୍ର ମହାସମସ୍ୟାର ସମ୍ମୁଖୀନ ହୋଇ ତାଙ୍କର ରାଜପଣ୍ଡିତ-ମାନଙ୍କୁ ପଚାରିବାରୁ ତାହା ଗଣନା କରିବାକୁ କେହି ସକ୍ଷମ ହୋଇ ପାରିଲେ ନାହିଁ । ସମସ୍ତେ ଏକସ୍ୱରରେ ଉତ୍ତର ଦେଲେ – ଆଜ୍ଞା ! ନଦୀର ବାଲି ଯଦି ଗଣାଯାଇ ପାରେ, ତା'ହେଲେ ଆକାଶର ନକ୍ଷତ୍ର ଗଣିବା ସମ୍ଭବ । ଯେ ଏ ସମାଜକୁ ସୃଷ୍ଟି କରି—ଗ୍ରହ ନକ୍ଷତ୍ରମାନଙ୍କୁ ଆଗପାଛ କରୁଛନ୍ତି; ତାଙ୍କ ପକ୍ଷରେ ତ ଏହା କହିବା ଅସମ୍ଭବ ଆମେ ତ ଛାର ମାନବ । ଏହା କ ଆମ୍ଭ ଦ୍ୱାରା ସମ୍ଭବ ?

କ'ଣ କରିବେ, ମହାରାଜା ବଡ଼ ଚିନ୍ତିତ ହେଲେ । ନବାବଙ୍କର ଭୟରେ ତାଙ୍କର କର୍ମମୟ ଜୀବନରେ ନାନାଦି ବ୍ୟତିକ୍ରମ ଘଟିଲା । ଶେଷରେ ସେ ପ୍ରଚାର କରିଦେଲେ ଯେ, ଯିଏ ଆକାଶର ନକ୍ଷତ୍ର ଗଣନା କରି କହିବ, ସେ ଦଶହଜାର ଟଙ୍କା ପୁରସ୍କାର ପାଇବ । ତଥାପି ମଧ୍ୟ ନକ୍ଷତ୍ର ଗଣନା କରି କହିବାକୁ କେହି ସକ୍ଷମ ହୋଇ ପାରିଲେ ନାହିଁ ।

ଦିନେ ରାଜା ଅତ୍ୟନ୍ତ ଚିନ୍ତିତ ମନରେ ବସିଥାନ୍ତି । ଗୋପାଳ ତାଙ୍କୁ ଆସି ନମସ୍କାର କରି କହିଲା—ମହାରାଜ ! ମୁଁ ଆଜକୁ

ସପ୍ତାହନ ବ୍ୟାପୀ ଗ୍ରାମରେ ଉପସ୍ଥିତ ନଥିଲ । ଆଜ ଫେରଦେଖେତ ଚନ୍ଦ୍ରଙ୍କୁ ରାହୁ ଗ୍ରାସ କଲା ପରି ଆପଣଙ୍କର ମୁଖଶ୍ରୀ ସେହିଭଳି ଅଶୋଭା ଦେଖା ଯାଉଛି । ଯେଉଁ ଦୁଃସାଧ୍ୟ କାର୍ଯ୍ୟପାଇଁ ଆପଣ ଯେ ଏତେ ହତୋତ୍ସାହ ହୋଇ ପଡ଼ିଛନ୍ତି ? ଏ ଆନୁଗତ୍ୟ ଆପଣଙ୍କର ସବୁ କିଛି ଉପକାର କରିପାରେ ତା'ହେଲେ କୁହନ୍ତୁ ।

ଗୋପାଳର କଥା ଶୁଣି ରାଜା ଗୋପାଳକୁ କହିଲେ—ଯାହା ଘଟିଛି ତାହା ତୁମହାର ସମାଧାନ ହେବା ଅସମ୍ଭବ ; କାରଣ ସେହି କଥାଟାର ସମାଧାନ ପାଇଁ ଦଶହଜାର ଟଙ୍କା ପୁରସ୍କାର ଦେବାକୁ ପ୍ରସ୍ତୁତ କଲି ହେଲେ କୌଣସି ଜ୍ୟୋତିଷ କିମ୍ବା ପଣ୍ଡିତଙ୍କ ଦ୍ୱାରା ଏହା ସମ୍ଭବ ହୋଇ ପାରିଲା ନାହିଁ ; ତେଣୁ ମୁଁ ବର୍ତ୍ତମାନ ନାଚାର; କାରଣ ଏ ବିପଦରୁ ମୁଁ ରକ୍ଷା ପାଇପାରିବି ନାହିଁ କିମ୍ବା ନବାବଙ୍କ ଶାସ୍ତିରୁ ମୁକ୍ତି ପାଇ ପାରିବି ନାହିଁ ।

ରାଜାଙ୍କର ଏପରି ଦୁର୍ଦ୍ଦଶା ଶୁଣି ଗୋପାଳ ଅତ୍ୟନ୍ତ ବ୍ୟଥିତ ହୋଇ ପଚାରିଲା···ମହାରାଜ ! ଆପଣ ମୋତେ ସେ କଥାଟା କହିଲେ କ'ଣ ଦୋଷ ହେବ ? ରାଜା କହିଲେ, ଦୋଷ କିଛି ନୁହେଁ, ତେବେ ଶୁଣ । କଥାଟା ହେଲା ଯେ; ନବାବ ଆକାଶର ନକ୍ଷତ୍ର ଗଣନା କରି କହିବାକୁ ମୋତେ ଆଦେଶ ଦେଇଛନ୍ତି । ଏଥିକୁ ଉପାୟ କ'ଣ ମୁଁ କିଛି ଚିନ୍ତା କରିପାରୁ ନାହିଁ ।

ଏକଥା ଶୁଣି ଗୋପାଳ ଆନନ୍ଦ ମନରେ କହିଲେ···ମହାରାଜ ! ଆପଣ ଏ ସାମାନ୍ୟ କଥାପାଇଁ ଏତେ ଚିନ୍ତିତ ? ନକ୍ଷତ୍ର ଗଣିବାପାଇଁ ତିନି ହଜାର ଟଙ୍କା ନବାବଙ୍କ ଠାରୁ ମଗାଇ ଦେଲେ ମୋ ଦ୍ୱାରା

ଗଣନା କାର୍ଯ୍ୟ ହୋଇ ପାରିବ । ତା ବ୍ୟତୀତ ନକ୍ଷତ୍ରର ସଂଖ୍ୟା କରିବା ପାଇଁ ୨୮ ବସ୍ତା ମେଣ୍ଢା ଲୋମ ଯୋଗାଡ଼ କରି ଘରକରେ ବସନ୍ତୁ । ମୁଁ ଚାରିମାସ ପରେ ନବାବଙ୍କୁ ଗଣି ବୁଝାଇ ଦେଇ ଆସି ପାରିବି ।

ଏ କଥା ଶୁଣିବାମାତ୍ରେ ରାଜା ଆନନ୍ଦରେ ବିହ୍ୱଳ ହୋଇଗଲେ । ସେ ଜାଣନ୍ତି ଯେ, ଗୋପାଳର ଚତୁରତା ଯୋଗୁଁ ସେ କେତୁତ ବିପଦରୁ ମୁକ୍ତ ପାଇଛନ୍ତି । ନବାବ ଦରବାରରୁ ନିଜ ବୁଦ୍ଧି ରେ ମୋର ପିତୃ ଉତ୍ସର୍ଗ ଖଣ୍ଡିକୁ ମୁକୁଳାଇ ଆଣିଛି, ମହାଭାରତ ମଧ୍ୟ ଲେଖି ଦେଇଛି । ଆଜି ଏ ବିପଦରୁ ମୁକୁଳିତ ହେବାକୁ ହେଲେ ଗୋପାଳହିଁ ମୋର ସାଥୀ । ରାଜା ଏହା ଭାବି ଗୋପାଳର କଥା ଅନୁଯାୟୀ ନବାବଙ୍କ ଦରବାରକୁ ଚିଠି ଲେଖିଲେ, ଚିଠିପାଇ ନବାବ ତିନ ହଜାର ଟଙ୍କା ପ୍ରେରଣ କଲେ । ରାଜା ଟଙ୍କା ଗୁଡ଼ିକ ଗୋପାଳକୁ ଦେଇ ଚାରିବସ୍ତା ମେଣ୍ଢା ଲୋମ ଯୋଗାଡ଼ କରି ଦେଲେ ସେ ଟଙ୍କାତକ ନେଇ ମହା ଆନନ୍ଦରେ ଚାଲିଗଲା । ଚାରିମାସ ପରେ ପୁଣି ଡକରା ପଡ଼ିବାରୁ ଗୋପାଳ କହିଲା ଆଜ୍ଞା, କାଲିଠାରୁ ମୋର କାର୍ଯ୍ୟ ସମାପନ ହୋଇଛି । କେବଳ ସଂଖ୍ୟାତକ ବୋହିବା ପାଇଁ ୪ ଜଣ ମଜୁରିଆ ପ୍ରୟୋଜନ । ଏ କଥା ଶୁଣି ରାଜା ଚାରିଜଣ କୁଲି ଯୋଗାଡ଼ କରିଦେଲେ । ପରଦିନ ସକାଳୁ ଗୋପାଳ ପଣ୍ଡିତ ସାଜ ୪ ଗୋଟି ବୋଝିଆଙ୍କୁ ମେଣ୍ଢା ଲୋମ ଲଦି ଦେଇ ନବାବଙ୍କ ଦରବାରରେ ପଦାର୍ପଣ କଲା । ନବାବ ଗୋପାଳକୁ ଦେଖି ପଚାରିଲେ, ତୁମେ କିଏ ? କେଉଁଆଡ଼େ ଆସିଛ, ଏ ବସ୍ତାରେ କ'ଣ ସବୁ ଆଣିଛ ?

ଏକଥା ଶୁଣି ଗୋପାଳ କହିଲେ— ନବାବ ସାହେବ ! ମୁଁ ମହାରାଜା କୃଷ୍ଣଚନ୍ଦ୍ରଙ୍କର ଜଣେ ସର୍ବଜ୍ଞତା ପଣ୍ଡିତ । ଆପଣଙ୍କର ହୁକୁମ ଅନୁଯାୟୀ ନକ୍ଷତ୍ର ଗଣନା କରି ସଂଖ୍ୟାସବୁ ବସ୍ତା ମଧ୍ୟରେ ପୂରାଇ ଆପଣଙ୍କୁ ବୁଝାଇ ଦେବାକୁ ଆସିଛୁ । ଆପଣ ଏହାସବୁ ମୋ ଠାରୁ ବୁଝିନେଇ ମୋତେ ପୁରସ୍କାର ଦେଇ ବିଦାୟ କରନ୍ତୁ ।

ଗୋପାଳର କଥା ଶୁଣି ନବାବ କହିଲେ— ତାରା ସଂଖ୍ୟା ଦେଖା ତ ? ଗୋପାଳ ସଙ୍ଗେ ସଙ୍ଗେ ବସ୍ତା ଗୁଡ଼ିକୁ ଦେଖାଇଦେଲେ ନବାବ ଲୋମ ଗୁଡ଼ିକ ଦେଖି ଆଶ୍ଚର୍ଯ୍ୟ ହୋଇ ପଚାରିଲେ, ଏ ସବୁ କ'ଣ ? ଗୋପାଳ କହିଲେ —ଜାହାଁପନା, ଏ ହେଉଛି ମେଣ୍ଢାଲୋମ । ଗୋଟିଏ ଲେଖାଏଁ ଲୋମରେ କୋଡ଼ିଏ ଲେଖାଏଁ ତାରା ସଂଖ୍ୟା ଅଛନ୍ତି । ଏହିରୂପେ ଲୋମକୁ ତାରାରୂପେ ତିଆରି କରାଯାଇଛି । ଲୋମ ବ୍ୟତୀତ ଅନ୍ୟ କେଉଁଥିରେ ତାରା ସଂଖ୍ୟା ବୁଝାଇ ହୋଇ ନ ଥାନ୍ତା ; ତେଣୁ ବହୁ କଷ୍ଟରେ ହଜୁରଙ୍କର ହୁକୁମରେ ତାରା ଗଣିବାକୁ ସକ୍ଷମ ହୋଇଛୁ । ଏଥିପାଇଁ ଆମକୁ ବିଦାୟ ଦିଅନ୍ତୁ ।

ନବାବ ଲୋମ ଗୁଡ଼ିକ ଦେଖି ବିରକ୍ତ ହୋଇ କହିଲେ— ଧନ୍ୟ ତୁମେ ପଣ୍ଡିତ ! ମର୍ତ୍ତ୍ୟର ମାନବ ହୋଇ ଆକାଶର ତାରା ଗଣିବାକୁ ଯା ସକ୍ଷମ ହୋଇଛ ସେଥିପାଇଁ ତୁମକୁ ଅଶେଷ ଧନ୍ୟବାଦ । ମୁଁ ତାରା ସଂଖ୍ୟା ସବୁ ପାଇଲି । ଏଥର ତୁମେ ସ୍ୱାକୁ ସବୁ ନେଇ ଏଠାରୁ ଚାଲିଯାଅ । ମୋର ସମୟ ନାହିଁ ଯେ, ସ୍ୱାକୁ ସବୁ ବସି ଗଣିବି ।

ଏକଥା ଶୁଣି ଗୋପାଳ କହିଲେ ଜାହାଁପନା ! ମୁଁ ବହୁତ କଷ୍ଟରେ ଗଣିଥିଲି କ'ଣ ଏଇଥିପାଇଁ ? ଆପଣ ହାକୁ ରଖନ୍ତୁ ଆମେ

ଦୁଲଯାଉନ୍ତୁ । ନବାବ କହିଲେ—ନା, ନା, ତୁମର ପରିଶ୍ରମ ପାଇଁ ଆହୁରି ହଜାର ଟଙ୍କା ନେଇ ଯାଉ । ନବାବ ଗୋପାଳଙ୍କୁ ଆହୁରି ହଜାର ଟଙ୍କା ଦେଇ ବିଦାୟ ଦେଲେ ।

ଗୋପାଳ ରାଜାଙ୍କୁ ସମସ୍ତ କଥା କହିଲା । ରାଜା ଖୁସିହୋଇ ହଜାରେ ଟଙ୍କା ଦେଇ ବିଦାୟ ଦେଲେ ।

—*—

## ଗୋପାଳ ଓ ବାଇଜୀ

ଏକଦା ରାଜା କୃଷ୍ଣଚନ୍ଦ୍ର ସଭାରେ ଗୋଟିଏ ବାଇଜୀ ହାର ନୃତ୍ୟ ଗୀତ ଆରମ୍ଭ ହେଲା । ସେ ସଭାରେ ରାଜା ଓ ଗୋପାଳ ଭାଣ୍ଡ ସହିତ ଅନ୍ୟାନ୍ୟ କର୍ମଚାରୀମାନେ ଉପସ୍ଥିତ ଥିଲେ । ଗୋପାଳକୁ ଅପଦସ୍ତ କରିବାପାଇଁ ରାଜା ବାବାଜୀଙ୍କୁ ଇଙ୍ଗିତ କରନ୍ତେ, ସେ ନୃତ୍ୟ କରୁକରୁ ଅଙ୍ଗଭଙ୍ଗୀ କରି ଗୋପାଳ ଭାଣ୍ଡଙ୍କୁ କୁଣ୍ଢାଇ ପକାଇଲା ଏହାଦେଖି ଦର୍ଶକ ମଣ୍ଡଳୀ ତାଳମାରି ହସି ଉଠିଲେ । ଗୋପାଳ ଅତର୍କିତ ଭାବେ ବାଇଜୀର ହାତ ଛଡ଼ାଇ ଦେଇ ଫଟଆଡ଼କୁ ଚାହିଁ ରହିଲା । ତା'ର ଭାବଭଙ୍ଗୀ ଦେଖି ବାଇଜୀ ଭୁଲିତା ନବୁଇ ହସି ହସି କହିଲା—କ'ଣ ହେଲା, ତୁମେ ମୁଖ ଫେରାଇ ରହିଲ ଯେ ? ମୁଁ ଭାବିଥିଲି, ତୁମେ ଜଣେ ରସରାଜ ବୋଲି ; କିନ୍ତୁ ବର୍ତ୍ତମାନ ଦେଖୁଛି ତୁମେ ଜଣେ ରସରାଜ ବଦଳରେ ମାଇଚିଆ, ବେରସିକ ଏବଂ ଲାଜକୁଳା । ଛି, ଏଇଟା କ'ଣ ପୁରୁଷର ପରିଚୟ ?

ବାଇଗାର କଥାଶୁଣି ଲୋକମାନେ ଆହୁରି ଜୋର୍‌ରେ ହସିଉଠି କହିଲେ—ଏଥର ଗୋପାଳ ଜବଦ ହୋଇଛୁ ; କିନ୍ତୁ ଗୋପାଳ ନ ହସି ଧୀର ସ୍ୱରରେ କହିଲା—

ନା ସୁନ୍ଦରୀ ! ମୁଁ ଠିକ୍ ରସିକ୍ ଓ ପ୍ରେମିକ । ମୋପରି ପ୍ରେମିକ ବୋଧହୁଏ ପୃଥିବୀରେ ବିରଳ । ମୁଁ ଥରେ ଯାହା ଦେହରେ ହାତ ବୁଲାଇ ଦେବି, ସେ ମୋତେ ଜୀବନସାରା ଭୁଲି ପାରିବ ନାହିଁ ।

ଏକଥା ଶୁଣି ବାଇଗା କହିଲା—ତେବେ ତୁମେ ଛୁଞ୍ଚାହୋଇ ପଛକୁ ଅନାଇଲ କାହିଁକି ? ଗୋପାଳ କହିଲା - ରଜାଙ୍କ କଥାଶୁଣି ଭୟରେ ମୁଁ ପଛକୁ ଅନାଇ ଦେଖୁଥିଲି । ବାଇଗା ପଚାରିଲା କ'ଣ ତୁମେ ଦେଖୁଥିଲ ? ଗୋପାଳ କହିଲା—ଆମର ମହାରାଜ କହି-ଥିଲେ, ତୁମେ କାଳେ ପୀନୋନ୍ନତ ପୟୋଧରା । ମୋର ବକ୍ଷ ଭେଦକରି ସେ ଦୁଇଟି ପଛଆଡ଼େ ଫୁଟି ବାହାରିଛି କି ନାହିଁ, ତାହା ଦେଖୁଥିଲି ।

ଗୋପାଳ କଥା ଶୁଣି ଦର୍ଶକମାନେ ହସି ଉଠିଲେ । ରଜା ଅପମାନରେ ମୁହଁଟିକୁ ତଳକୁ କଲେ । ବାଇଗା ଲଜ୍ଜାରେ ଗୋପାଳକୁ ଛାଡ଼ିଦେଇ ଆଡ଼େଇ ଗଲା ।

—*—

## ଧାଣ୍ଡର ଲଢ଼େଇ

ପୂର୍ବକାଳରେ ପ୍ରତ୍ୟେକ ରଜାଙ୍କ ପାଖରେ ରହସ୍ୟପୂର୍ଣ୍ଣ ଦୁଇ ଚାରିଜଣ କରି ଭଣ୍ଡ ଥିଲେ । ସେମାନେ ରଜାଙ୍କର ମନରସ ମନ

ସରସ କରିବା ପାଇଁ ହସରି ଜୁଆର ଖେଳାଇ ଦେଉଥିଲେ । ଗୋପାଳ ଭଣ୍ଡର ଏହିପରି କୌତୁକ କଥା ଯୋଗୁଁ ସେ ରାଜଦରବାରରେ ସୁଖ୍ୟାତି ଅର୍ଜନ କଲା । ଅନ୍ୟ ଭଣ୍ଡମାନେ ଗୋପାଳର ନାମ ଓ କାମ ଶୁଣି ତା ଉପରକୁ ମନେ ମନେ ଚିଡ଼ି ଉଠୁଥିଲେ । ମନେ ମନେ ଭାବୁଥିଲେ ଯଦି ଗୋପାଳ ଥରେ ଆମର ହାବୁଡ଼ରେ ପଡ଼ନ୍ତା ତାକୁ ଗୁଆକାତିରେ ଚିପିଲା ଭଳି ଚିପି ଦିଅନ୍ତେ ଏବଂ ତାର ଭଣ୍ଡପଣ ଛଡ଼ାଇ ଦିଅନ୍ତେ । ଭଣ୍ଡମାନେ ଏହିପରି ଭାବନ୍ତି ; କିନ୍ତୁ ହାବୁଡ଼ରେ ପଡ଼ିଲେ ସେମାନଙ୍କର ବୁଦ୍ଧି ବିଦ୍ୟା କୁଆଡ଼େ ଉଡ଼ିଯାଏ । ଗୋପାଳ ତାର ଉପସ୍ଥିତ ଭଣ୍ଡପଣ, ବିଜ୍ଞତା, ଚାତୁର୍ଯ୍ୟ ଓ ନ୍ୟାୟଶାସ୍ତ୍ର ପଣରେ ଅନ୍ୟ ଭଣ୍ଡଙ୍କ ମୁଖରେ ଚୂନକାଳି ଦେଇ ପୁରସ୍କାର ହାତେଇ ଚାଲିଆସେ ; କିନ୍ତୁ ଗୋପାଳ ଦ୍ୱାରା ଅନ୍ୟ ସମସ୍ତ ଭଣ୍ଡ ଅପମାନିତ ହୁଅନ୍ତି ।

ସେଦିନ ବର୍ଦ୍ଧମାନ ରାଜା ତାଙ୍କ ରାଜସଭାରେ ବସି ଗୋପାଳ ଭାଣ୍ଡର ପ୍ରଶଂସା ଗାନ କଲେ । ତାଙ୍କ ସଙ୍ଗରେ ପଣ୍ଡିତମାନେ ମଧ୍ୟ ତାଳ ଦେଇ ଗୋପାଳର ପ୍ରଶଂସା କଲେ । କେବଳ ତାଙ୍କର ଯେଉଁ ଭାଣ୍ଡ ଜଣକ କଲା, ସେ ଚିଡ଼ି ଉଠି କହିଲା, ମହାରାଜ ! ଆପଣ ଯାହା କହୁଛନ୍ତି ଏ ବଡ଼ ଲାଜର କଥା । ନିଜ ଭାଣ୍ଡକୁ ଗୋଡ଼ରେ ଦଳିଦେଇ ଅନ୍ୟ ଭାଣ୍ଡଙ୍କୁ ମୁଣ୍ଡ ଉପରେ ଟେକି ଧରୁଛନ୍ତି । ଆପଣଙ୍କର ଭାଣ୍ଡ ଗୋପାଳ ଭାଣ୍ଡଠାରୁ କେତେ ନିମ୍ନ, ତାହା ଦିନେ ପରୀକ୍ଷା କରି ଦେଖିଛନ୍ତି କି ?

ଏହା ଶୁଣି ବର୍ଦ୍ଧମାନ ରାଜା କହିଲେ— ନା, ମୁଁ ଦିନେ ମଧ୍ୟ ପରୀକ୍ଷା କରି ନାହିଁ ସତ ; କିନ୍ତୁ ଯାହାକୁ ଲୋକମୁଖରୁ ଶୁଣା

ଯାଉଛି, ସମ୍ମୁଖ ପରୀକ୍ଷା କଲେ ତୁମେ ନିଶ୍ଚୟ ହାରିଯିବ । ଭାଣ୍ଡ କହିଲା— ହାରିବା କି ଜିଣିବା ତାହା ଆପଣ ଜାଣିବେ କିପରି ? ତାଙ୍କୁ ଡାକନ୍ତୁ ଏଠାକୁ ନେଇ ଆସି ପରୀକ୍ଷା କରନ୍ତୁ ତ ଦେଖିବା ସେ କିପରି ମୋଠାରୁ ବଳିଯିବ । ମୁଁ ଏ ରାଜସଭାରେ ଏପରି ପ୍ରତିଜ୍ଞା କରି କହୁଛି, ତାଙ୍କୁ କଥା କଥାକେ ପରାସ୍ତ ନ କଲେ ଆଉ ମୁଖ ଦେଖାଇବି ନାହିଁ । ଆପଣ ସ୍ୱଚକ୍ଷୁରେ ଦେଖିପାରିବେ ସେହି ଭଣ୍ଡାର ଭଣ୍ଡଟା ମୁହଁଟିର ଚୂନକାଳି ମାରି ପଳାଇ ଯିବାକୁ ବାଟ ପାଇବ ନାହିଁ ।

ଭାଣ୍ଡର ପ୍ରତିଜ୍ଞା ଶୁଣି ବର୍ଦ୍ଧମାନ ରାଜା କହିଲେ—ବେଶ୍ ତୁମର କଥା ହେବ । ମୁଁ ଆଜ ଚିଠିଲେଖି କୃଷ୍ଣଚନ୍ଦ୍ର ଓ ତାଙ୍କ ଭାଣ୍ଡକୁ ଡକାଇ ଆଣିବି । ରାଜ୍ୟରୁ ବିଶିଷ୍ଟ ଲୋକଙ୍କୁ ଡକାଇବି । ସଭାରେ ଗୋଟିଏ କଦଳୀ ଓ ଦଶହଜାର ଟଙ୍କାର ଥଳୀଟି ରଖାଯିବ । ମୁଁ ନିଜେ ତୁମ୍ଭ ଦୁହିଁଙ୍କୁ ପରୀକ୍ଷା କରିବି । ଯେ ପରୀକ୍ଷାରେ ଜୟୀ ହେବ, ସେ ଟଙ୍କା ଥଳୀ ନେଇ କଦଳୀଟି ଅପର ଭାଣ୍ଡ ମୁହଁରେ ଭୁଙ୍କାଇ ଦେଇ ଚାଲିଯିବ । ଏହା ନକରିବା ଯାଏ ମୋର ମନସାଧ ମେଣ୍ଟିବ ନାହିଁ ।

ଏଥିରେ ଭାଣ୍ଡ ରାଜି ହେଲେ । ସଭାରେ ପଣ୍ଡିତମାନେ ହିଁ ସ୍ୱୀକାର କଲେ ସଙ୍ଗେ ସଙ୍ଗେ ରାଜା ଖଣ୍ଡିଏ ଚିଠିଦେଲେ । କୃଷ୍ଣଚନ୍ଦ୍ର ଚିଠିଖଣ୍ଡିକ ପଢ଼ି ଗୋପାଳଭାଣ୍ଡକୁ କହିଲେ— ଗୋପାଳ, ବର୍ଦ୍ଧମାନ ରାଜା ମୋତେ ଓ ତୁମକୁ ଡକାଉଛନ୍ତି । ସେଠାରେ ଭାଣ୍ଡ ଲଢ଼ାଇ ହେବ । ତୁମେ ଯିବ ତ ? ଗୋପାଳ ଭାଣ୍ଡ ହାତଯୋଡ଼ି କହିଲା— ଗୁମୁଙ୍କର ଭାଣ୍ଡ କେବେହେଁଲେ ପଛୁଏ ନା । ମରୁ ବା ମାରୁ, ସେ

କଣ୍ଠସ୍ଥ ତାଳ ପକାଇବାକୁ ଆଗଭର ହୁଏ । ତେବେ ଡେରି କରୁଛନ୍ତି କାହିଁକି, ଚାଲନ୍ତୁ ।

ରାଜା କହିଲେ, ତୁମେ ତାଙ୍କ ଭାଣ୍ଡ ସହିତ ତାଳଦେଇ ଜୟୀ ହୋଇ ପାରିବ ତ ? ନୋହିଲେ ଯେ, ଅପମାନରେ ମୁଣ୍ଡ ଟେକି ପାରିବ ନାହିଁ । ଗୋପାଳ କହିଲା, ଆପଣଙ୍କର ଆଶୀର୍ବାଦରୁ ସଂସାରରେ ଯେତେ ଭାଣ୍ଡ ଅଛନ୍ତି, ସେ ସମସ୍ତେ ଏକଜୁଟ ହେଲେ ମୁଦ୍ଧା ତଥାପି ଗୋପାଳ ସେମାନଙ୍କ ମୁହଁକୁ ମୋଡ଼ିଦେଇ ଜୟ ନାଗରା ବଜାଇ ଆସିବ । ସେଥିପାଇଁ ଚିନ୍ତା କରୁଛନ୍ତି କାହିଁକି ? ଆଗେ କ୍ଷେତ୍ର ଉପରକୁ ଚାଲନ୍ତୁ । ତେଣିକି ଯାହା ହେବ, ଗୋପାଳର କଥା ଦେଖିବ । ରାଜା ହସି ହସି କହିଲେ—ତାହେଲେ ଶିଘ୍ରରେ ଲେକ ମାରି ଆସ । ଲଢ଼ାଇ କରି ଦଶହଜାର ଟଙ୍କା ନେଇ ଆସିବ କି କଦଳୀ ଘଷା ଖାଇବ । ମୁଁ ଯାଉଛୁ ପ୍ରସ୍ତୁତ ହୁଏ । ହଁ ଯେପରି ମୋର, ରାଜ୍ୟର ତଥା ତୁମର ସମ୍ମାନ ରହେ ।

ରାଜା କୃଷ୍ଣଚନ୍ଦ୍ର ଏହା କହି ଚାଲିଗଲେ । ଗୋପାଳ ଭାଣ୍ଡ ଯାଇ ପ୍ରସ୍ତୁତ ହୋଇ ଆସିଲା । ଶୁଭ ବେଳା ଦେଖି ରାଜା ଓ ଗୋପାଳ ବର୍ଦ୍ଧମାନ ଯାତ୍ରା କଲେ । କୃଷ୍ଣଚନ୍ଦ୍ର ବର୍ଦ୍ଧମାନରେ ପହଞ୍ଚିବା ମାତ୍ରେ ବର୍ଦ୍ଧମାନ ରାଜା ତାଙ୍କୁ ପଚ୍ଛେଇ ନେଇ ସମ୍ମାନ ସହକାରେ ଯଥାଯୋଗ୍ୟ ଆସନ ଦେଲେ ।

ଭାଣ୍ଡ ଲଢ଼େଇ ହେବ । ଲଢ଼େଇ ଦେଖିବା ପାଇଁ ହଜାର ହଜାର ଲୋକ ଠୁଳ ହୋଇଥାନ୍ତି । ସମସ୍ତେ ନୀରବ ହୋଇ ଭାଣ୍ଡ ମୁହଁକୁ ଅନାଇ ଥାଆନ୍ତି । ରାଜାଙ୍କ ହୁକୁମ ହେଲା । ଭାଣ୍ଡ ଦୁହେଁ ପ୍ରଶ୍ନ ଉତ୍ତର କଲେ ; କିନ୍ତୁ ପ୍ରତ୍ୟେକ କଥାରେ ଗୋପାଳର

ଜଡ଼ାପଟ ହେଲା । ବର୍ଦ୍ଧମାନ ଭାଣ୍ଡ ହାରିଯାଇ ରାଗରେ ନିଆଁ ବାଣ ପରି ଜଳି ଉଠିଲା । ରାଜା ଦୁହେଁ ନ ଥିଲେ କମ୍ବା ସଭା ଲାଗି ନ ଥିଲେ ହୁଏ ତ ଗୋପାଳକୁ ମାରି ଥାଆନ୍ତା । ବର୍ଦ୍ଧମାନ ରାଜା ଭାଣ୍ଡର ହାରିପଟ ଓ ରାଗ ଦେଖି ସେ ଗୋଟିଏ ବୁଦ୍ଧି ବାହାର କରି ଭାଣ୍ଡ ଦୁହିଁଙ୍କ କହିଲେ—ଆଚ୍ଛା, ତୁମେ ଦୁହେଁ ସଭା ମଧ୍ୟରେ ଯେତେ ଗୁଡ଼ିଏ ପ୍ରଶ୍ନ ଉତ୍ତର କଲ ସେସବୁ କୌତୁକ ପୂର୍ଣ୍ଣ କଥା । ସେଥିରେ କୌଣସି ଶିଖିବାର ନାହିଁ । ବୁଦ୍ଧିଚାର ପରୀକ୍ଷାରେ ଯେ ଉତ୍ତୀର୍ଣ୍ଣ ହେବ, ସେ ଦଶହଜାର ଟଙ୍କା ନେଇ ଅପର ମୁଖରେ କଦଳୀ ଘଷି ଦେଇ ଯିବ । ତୁମେମାନେ କ'ଣ କହୁଛ ।

ବର୍ଦ୍ଧମାନ ରାଜାଙ୍କ ମୁଖରୁ ଏକଥା ଶୁଣି ଭାଣ୍ଡ ଦୁହେଁ କହିଲେ, ଆଜ୍ଞା ' କ'ଣ ପରୀକ୍ଷା କରିବାର କରନ୍ତୁ । ସେଥିପାଇଁ ଆମେ ପ୍ରସ୍ତୁତ ଅଛୁ ।

ଭାଣ୍ଡ ଦୁହିଁଙ୍କର କଥା ଶୁଣି ବର୍ଦ୍ଧମାନ ରାଜା କହିଲେ, ମୋର ପ୍ରଥମ ପରୀକ୍ଷା ହେଉଛି ଯେ ତୁମେ ଦୁହେଁ ଯାଅ, ଏହି ଦୁଇ ତିନ ଘଣ୍ଟା ମଧ୍ୟରେ ମୋତେ ତିନିଜଣ ଲୋକ ଆଣି ଦେବ । ତା' ମଧ୍ୟରୁ ଜଣେ ଏପାରିର, ଜଣେ ସେପାରିର, ଆଉ ମଧ୍ୟ ଜଣେ ମଧ୍ୟସ୍ଥଳର । ବୁଝିଲ ପାରିବ ତ ଅତି ଶୀଘ୍ର ଯାଅ ।

ରାଜାଙ୍କ ହୁକୁମ ପାଇ ଭଣ୍ଡ ଦୁହେଁ ନିଜ ନିଜର ବାଟ ଧରି ବାହାରିଗଲେ । ବର୍ଦ୍ଧମାନ ଭାଣ୍ଡ ଗୋଟିଏ ନଦୀ ଘାଟରେ ପହଞ୍ଚି ଦେଖିଲେ ଯେ, ନଦୀର ଦୁଇପାଖରେ ଦୁଇଜଣ ଲୋକ ପାରିହେବାକୁ ବସିଛନ୍ତି । ନାଉରିଆଟି ଜଣକୁ ଡଙ୍ଗାରେ ବସାଇ ଆର ପାରିରେ ଛାଡ଼ିବାକୁ ଯାଇ ନଦୀ ମଝିରେ ହୋଇଛି । ରାଜାଙ୍କ ପ୍ରଶ୍ନାନୁସାରୀ

ତିନ ଜଣଙ୍କୁ ଦେଖି ବର୍ଦ୍ଧମାନ ଭାଣ୍ଡ ନେଇ ଆସିଲା । ତେଣେ ଗୋପାଳ ଆଉ ଗୋଟିଏ ବାଗକୁ ଯାଇ ଜଣେ ବ୍ରାହ୍ମଣ ପଂଡ଼ିତ, ଜଣେ ସନ୍ନ୍ୟାସୀ ଓ ଆଉଜଣେ ବେଶ୍ୟାକୁ ନେଇ ଯଥା ସମୟରେ ଉପସ୍ଥିତ ହେଲା । ଗୋପାଳ ସାଙ୍ଗରେ ବେଶ୍ୟା, ବ୍ରାହ୍ମଣ ଓ ସନ୍ୟାସୀଙ୍କୁ ଦେଖି ସଭାଲୋକ ଖେଁ ଖେଁ ହୋଇ ହସି ଉଠିଲେ । ସେମାନଙ୍କୁ ଗୋପାଳର କଥା ଆଶ୍ଚର୍ଯ୍ୟ କଲା ଯେତିକି, କୌତୁକ ଆଣିଲା ସେତିକି । ତଥାପି ସେମାନେ ଉତ୍ତର ଶୁଣିବାକୁ ବସିଲେ ଭାଣ୍ଡ ଦୁହେଁ ଲୋକ ତିନ ଜଣଙ୍କୁ ସଙ୍ଗରେ ନେଇ ପ୍ରବେଶ ହେବାର ଦେଖି ବର୍ଦ୍ଧମାନ ରଜା ଆଗେ ତାଙ୍କର ଭାଣ୍ଡକୁ ପଚାରିଲେ—ତୁମେ କେଉଁ ତିନଜଣ ଆଣିଛ ଦେଖାଇଲ ?

ବର୍ଦ୍ଧମାନ ଭାଣ୍ଡ ତା'ର ଲୋକ ତିନ ଜଣଙ୍କୁ ଠିଆ କରାଇ କହିଲା ମହାରଜ ! ଏହି ଦେଖନ୍ତୁ, ମୋର ଏହି ତିନଜଣ ଲୋକ ଏପାରି ସେପାରି ଏ ମଧ୍ୟସ୍ଥିତ ଲୋକ । ଏହି ଜଣକ ପାରିହେବା ନଦୀ ଘାଟରେ ଏପାରିରେ ବସିଥିଲା । ଏ ଜଣକ ଏପାରିରୁ ଆସିବା ପାଇଁ ସେପାରିକୁ ଡଙ୍ଗାକୁ ଅପେକ୍ଷା କରିଥିଲା । ଆଉ ଏ ଜଣକ ଡଙ୍ଗାରେ ଯାଇ ମଝି ନଦୀରେ ହୋଇଥିଲେ । ଆପଣଙ୍କ ଆଦେଶ ମାତ୍ରେ ମୁଁ ଏହି ତିନ ଜଣଙ୍କୁ ନେଇ ଆସିଛି ! ସତ ମିଛ ପ୍ରମାଣ ବୁଝନ୍ତୁ ।

ନିଜ ଭାଣ୍ଡଠାରୁ ପ୍ରମାଣ ବୁଝି ବର୍ଦ୍ଧମାନ ରଜା ଗୋପାଳ ଭାଣ୍ଡକୁ କହିଲେ ଗୋପାଳ ! ତୁମର ଏ ତିନଜଣ ଲୋକ କିଏ କ'ଣ କହିଲ ? ଗୋପାଳ ସେ ତିନିଜଣଙ୍କୁ ଛିଡ଼ା କରାଇ କହିଲା, ମହାରଜ ! ଏହି ଯେ ବ୍ରାହ୍ମଣ ପଣ୍ଡିତଙ୍କୁ ଦେଖୁଛନ୍ତି, ଏ ହେଉଛନ୍ତି

ଏପାରିର ଲୋକ ; କାରଣ ଇହକାଳରେ କପରି ସୁଖ ପାଇବେ, ସୁଖ୍ୟାତି ଅର୍ଜନ କରିବେ, ଦୁଇ ପଇସା ଅର୍ଜନ କରି ନିଜର ନାମକୁ ବଡ଼ କରି ତୋଳିବେ—ଏ ସେହି ଚେଷ୍ଟାରେ ଅଛନ୍ତି ।

ଏହି ଯେଉଁ ସନ୍ନ୍ୟାସୀଟିକୁ ଦେଖୁଛନ୍ତି, ସେ ଏପାରିର ଧନ ମୋହ ମମତା ତ୍ୟାଗକରି ଭଗବାନଙ୍କ ପାଦପଦ୍ମରେ ମନ ରଖି ମୋକ୍ଷଲାଭର ଚେଷ୍ଟା କରୁଛନ୍ତି ; ତେଣୁ ଏ ସେପାରିର ଲୋକ । ଏପାରିର ଦୁଃଖ ସୁଖ ସଙ୍ଗେ ଏଙ୍କର କୌଣସି ସମ୍ପର୍କ ନାହିଁ । ଆଉ ମଧ୍ୟ ଏହି ଯେଉଁ ସ୍ତ୍ରୀ ଲୋକଟିକୁ ଦେଖୁଛନ୍ତି ଏ ହେଉଛି ବେଶ୍ୟା ଏହାର ଇହକାଳ ନାହିଁ କି ପରକାଳ ନାହିଁ । ଦୁଇ ଆଡ଼କୁ ହାତ ବଢ଼ାଇ ମଝିରେ ଛଟପଟ ହେଉଛି । ଏ ମଧ୍ୟ ପଥର ଲୋକ ।

ଏକଥା ଶୁଣିବା ମାତ୍ରେ ସଭାଲୋକେ ଧନ୍ୟ ଧନ୍ୟ କହି ତାଳି-ମାରି ଉଠିଲେ । ରାଜା କହିଲେ, ପ୍ରଥମ ପରୀକ୍ଷାରେ ତୁମର ଜୟ ହେଲା ଗୋପାଳ ! କିନ୍ତୁ ଦ୍ୱିତୀୟ ପରୀକ୍ଷା ଦେବାକୁ ହେବ ।

ଗୋପାଳ ହାତ ଯୋଡ଼ି କହିଲା—ଲେବେ କୁହନ୍ତୁ ପ୍ରଭୁ ! ରାଜା କହିଲେ, ଏ ମୁହୂର୍ତ୍ତରେ ଦୁଇ ଭାଣ୍ଡ ଦୁଇ ଘୋଡ଼ା ଚଢ଼ି ଯାଅ ଯିଏ ମୋ ରାଜକଟକ ଚତୁଃପାର୍ଶ୍ୱ ବୁଲି ମୋତେ ଆସି ଆଗ ଦେଖା ଦେବ ସେହି ହେବ ବଡ଼, ସେ ଏହି ଟଙ୍କା ଥଳୀର ଅଧିକାରୀ ହେବ ।

ବର୍ଦ୍ଧମାନ ରାଜା ଜାଣନ୍ତି, ଗୋପାଳ ବୁଦ୍ଧିମାନ । ତାର ଉପସ୍ଥିତ ବୁଦ୍ଧି ଅଛି ; କିନ୍ତୁ ତା'ର ପେଟ ଦୋଷପାଇଁ କେବେ

ଘୋଡ଼ାଚଢ଼ି ରାଜକଟକ ଆରେ ବୁଲି ଆସି ପାରିବ ନାହିଁ ; ତେଣୁ ସେ ନିଜ ଭଣ୍ଡର ଟେକ ରଖିବା ପାଇଁ ଏହି ବୁଦ୍ଧିଟି ବାହାର କରି ଭଣ୍ଡ ଦୁହିଁଙ୍କୁ କହିଲେ । ଭଣ୍ଡ ଦୁହେଁ ରାଜାଙ୍କ ହୁକୁମ ପାଇବାମାତ୍ରେ ଉଠି ଛିଡ଼ାହେଲେ । ରାଜାଙ୍କ ନିର୍ଦ୍ଦେଶରେ ସଇସ ଘୋଡ଼ା ଦୁଇଟି ଆଣି ସେଠାରେ ପହଞ୍ଚାଇ ଦେଲେ । ଘୋଡ଼ା ଦେଖି ବର୍ଦ୍ଧମାନ ଭଣ୍ଡ ତତ୍‌କ୍ଷଣାତ୍ ଡେଇଁ ଯାଇ ତା' ଉପରେ ଚଢ଼ି ତାକୁ ବଜ୍ର ପରି ଛୁଟାଇ ଦେଲେ । ରାଜା କୃଷ୍ଣଚନ୍ଦ୍ର ଭାବିଲେ ଗୋପାଳକୁ ତ ଘୋଡ଼ା ଚଢ଼ି ଆସେନା, ସେ ଏଥର ନିଶ୍ଚୟ ଠକିବ । ମୁଁ ଅପ-ମାନରେ ମୁହଁ ଟେକ ପାରିବି ନାହିଁ ।

ଗୋପାଳର ଡେରି ହେବା ଦେଖି ବର୍ଦ୍ଧମାନ ରାଜା ହସି ହସି କହିଲେ କହେ। ଗୋପାଳ । ତୁମେ ତ ଗଲ । ଏଥର କ'ଣ ହାରିବ ? ଗୋପାଳ କହିଲା— ହାରିବା ଜିଣିବା ପ୍ରଭୁ ବିଚାର କରିବେ ମୁଁ ଭଣ୍ଡ ହେଲେ ମଧ୍ୟ ମୋର ଟିକିଏ ଜ୍ଞାନ ଅଛି । ସାମାନ୍ୟ ଟଙ୍କା ବ'ଟା ପାଇଁ ମୁଁ କେବେହେଲେ ଆପଣଙ୍କ ଆଗରେ ଘୋଡ଼ା ଚଢ଼ି ପାରିବି ନାହିଁ, କେବଳ ଆପଣଙ୍କ ହୁକୁମକୁ ଶିରୋଧାର୍ଯ୍ୟ କରି ପଦଗତରେ ଖାଲି ରାଜଧାନୀ କ'ଣ ରାଜ୍ୟସାରା ବୁଲିଆସିବି । ଆପଣ ଯଦି ଦୁଇଟା ରାଜ୍ୟବୁଲି ଆସିବାକୁ ଆଦେଶ ଦେବେ, ତେବେ ମୁଁ ଏହି ସଙ୍ଗେ ସଙ୍ଗେ ଯିବି ।

ଗୋପାଳର ଅସମ୍ଭବ କଥା ଶୁଣି ବର୍ଦ୍ଧମାନ ରାଜା ଆଶ୍ଚର୍ଯ୍ୟ ହୋଇଗଲେ । ସଭାଲୋକଙ୍କ ମୁହଁରୁ କଥା ବାହାରିଲା ନାହିଁ । ରାଜା କୃଷ୍ଣଚନ୍ଦ୍ର ମନେ ମନେ ଖୁସି ହେବାକୁ ଲାଗିଲେ । ଗୋପାଳର କଥା ସଙ୍ଗେ ଶକ୍ତିକୁ ପରୀକ୍ଷା କରିବା ପାଇଁ ବର୍ଦ୍ଧମାନ ରାଜା ନିଜେ

କହିଲେ—ଗୋପାଳ ! ମୁଁ ତୁମକୁ ହୁକୁମ ଦେଲି, ମୋର ଭଣ୍ଡ ଆସିବା ଆଗରୁ ତୁମେ ଦୁଇଗୋଟି ରାଜ୍ୟ ବୁଲି ଆସିଲେ ଏକ ଲକ୍ଷ ହଜାର ଟଙ୍କା ଅପେକ୍ଷା ଆହୁରି ବେଶୀ ପୁରସ୍କାର ପାଇବ । ଯାଅ—

ହୁକୁମ ପାଇ ଗୋପାଳ ହାତ ଯୋଡ଼ି ରାଜା ଦୁହିଁଙ୍କୁ ନମସ୍କାର କଲା । ପର ମୁହୂର୍ତ୍ତରେ ସେ ବାହାରକୁ ଆସି ଖୁବ୍ ଧୀର ସ୍ଥିର ଓ ନମ୍ରତା ଭାବେ ବର୍ଦ୍ଧମାନ ରାଜାଙ୍କ ସିଂହାସନ ଚାରିପାଖେ ତିନିଥର ବୁଲିଲା । ତା'ପରେ କୃଷ୍ଣଚନ୍ଦ୍ର ରାଜା ଦୁହିଁଙ୍କୁ ନମସ୍କାର କରି ଯଥା ସ୍ଥାନରେ ବସିଲା । ଗୋପାଳର କର୍ମଦେଖି ରାଜାରୁ ପ୍ରଜାଯାଏ ସମସ୍ତେ ଅବାକ୍ ହୋଇ ରହିଁ ରହିଲେ । ଏହାର ଅର୍ଥ କେହି କିଛି ବୁଝି ପାରିଲେ ନାହିଁ ।

ଦୁଇଘଣ୍ଟା ପରେ ବର୍ଦ୍ଧମାନ ଭଣ୍ଡ ରାଜଧାନୀ ବୁଲିଆସି ଘୋଡ଼ା ଉପରୁ ଓହ୍ଲାଇ ରାଜା ଦୁହିଁଙ୍କୁ ନମସ୍କାର କରି କହିଲା, ଆଜ୍ଞା ! ଗୋପାଳ ଯାଇ ନାହିଁ । ମୁଁ ଏକା ରାଜଧାନୀଟି ବୁଲି ଆସିଲି । ଏହା ବିଚାର କରି ପୁରସ୍କାରଟି ମୋତେ ଦିଅନ୍ତୁ ।

ବର୍ଦ୍ଧମାନ ଭଣ୍ଡର କଥାଶୁଣି ଗୋପାଳ ଭଣ୍ଡ କହିଲା-ମହାରାଜ ! ଆପଣଙ୍କର ଭଣ୍ଡ ସିନା ଖାଲି ରାଜଧାନୀଟି ବୁଲି ଆସିଛି ; କିନ୍ତୁ ମୁଁ ଆପଣଙ୍କର ଆଜ୍ଞା ଶିରୋଧାର୍ଯ୍ୟ କରି ଆପଣଙ୍କ ରାଜ୍ୟସାରା ତିନିଥର ବୁଲିଆସି ଅନେକ ବେଳୁ ହଜୁରଙ୍କ ଆଗରେ ବସିଛି ।

ଗୋପାଳର ଅସମ୍ଭବ କଥା ଶୁଣି ବର୍ଦ୍ଧମାନ ରାଜା ମୁହଁଟି କୁଞ୍ଚିତ କରି କହିଲେ—ଗୋପାଳ ! ତୁମେ ଆମର ସିଂହାସନ

ଘୂରିପାଖେ ତିନବାର ବୁଲିଆସି ରାଜ୍ୟ ବୁଲିଲ କହୁଛ କିପରି ? ଗୋପାଳ ହାତଯୋଡ଼ି କହିଲ—ମହାରାଜ ! ଶାସ୍ତ୍ର କହୁଛି, ରାଜା ନେଇ ରାଜ୍ୟ । ଆପଣ ଯେଉଁଠି ରାଜ୍ୟ ସେଇଠି ଆପଣଙ୍କର ରାଜଧାନୀ କେତେ ପ୍ରଜାପୁଞ୍ଜ କେତେ, ସବୁ ଆପଣଙ୍କର ମୁଖସ୍ଥ ହୋଇଛି । ଆପଣ ଯେଉଁ ହୀରାନୀଳା ଖଚିତ ସ୍ୱର୍ଣ୍ଣ ମୁକୁଟଟି ମସ୍ତକରେ ପିନ୍ଧିଛନ୍ତି, ସେ ମୁକୁଟ ନୁହେଁ ରାଜ୍ୟର ଗୁରୁଭାର । ଆପଣ ଯେଉଁ ସିଂହାସନରେ ବସିଛନ୍ତି, ସେ ସିଂହାସନ ନୁହେଁ—ରାଜ୍ୟର ଆସ୍ଥାନ ଆପଣ ଇଚ୍ଛାକଲେ ରାଜ୍ୟକୁ ଧ୍ୱଂସକରି ପୁଣି ଗଠନ କରିପାରିବେ ଗରିବକୁ ରତ୍ନ ସିଂହାସନ ଦେଇ ଧନୀକୁ ଫାଶୀ ଖୁଣ୍ଟରେ ଝୁଲାଇଦେଇ ପାରିବେ । ଏପରି ସ୍ଥଳେ ଆପଣଙ୍କର ବାସ୍ତବ ଶକ୍ତି ସ୍ୱରୂପ ରାଜ୍ୟ ଘୂରିପାଖରେ ପ୍ରଦକ୍ଷିଣ ନକରି ଅବାସ୍ତବ ରାଜ୍ୟକୁ ବୁଲିବାକୁ ଯାଇଥାନ୍ତି କାହିଁକି ? ଆପଣ ତ ଶିବ ପୁରାଣରୁ ଶୁଣିଥିବେ; ହର ପାର୍ବତୀ ଓ ଗଣେଶ, କାର୍ତ୍ତିକେୟଙ୍କ କଥା । କାର୍ତ୍ତିକେୟ ମୟୂର ଉପରେ ଚଢ଼ି ପୃଥିବୀ ପର୍ଯ୍ୟଟନ କରିବାକୁ ବାହାରିଗଲେ ଓ ଗଣେଶ ଇନ୍ଦୁର ଉପରେ ଚଢ଼ି ଶିବ ଶକ୍ତିଙ୍କ ସିଂହାସନ ଘୂରି ପାଖରେ ବୁଲିଆସି ଜିତିବାରେ ଅଗ୍ରଣୀ ହେଲେ । ଏହା ଯେବେ ମିଛ ହୁଏ, ତେବେ ମୁଁ ସିଂହାସନ ଘୂରିପାଖରେ ବୁଲିବା ସିନା ମିଛ ହେବ ।

ଗୋପାଳ ଏହାକହି ହାତଯୋଡ଼ି ଛିଡ଼ାହେଲା । ଏକଥା ଶୁଣି ସଭାଲୋକେ ଧନ୍ୟ ଧନ୍ୟ କହି କରତାଳି ଦେଲେ । ବର୍ଦ୍ଧମାନ ରାଜା କହିଲେ—ଗୋପାଳର ଏତେ ସୁନାମ କାହିଁକି, ତାହା ଆଜ ସମ୍ପୂର୍ଣ୍ଣ ଜଣାଗଲା । ସେ ଖାଲି ଭଣ୍ଡାମି କରି ଲୋକମାନଙ୍କୁ ହସାଏ ନାହିଁ, ଦରକାର ହେଲେ ବଶିଷ୍ଟ ବିଜ୍ଞତାର ପରିଚୟ ବି ଦିଏ ।

ରଜା ଏହାକହି ଦଶହଜାର ଟଙ୍କା ସହ ପାଟଲୁଗା ଏବଂ ପାଟଜାମା ତାକୁ ପୁରସ୍କାର ଦେଲେ । ବର୍ଦ୍ଧମାନ ରଜାଙ୍କ କହିବା ଅନୁସାରେ ଗୋପାଳ ଦଶହଜାର ଟଙ୍କାନେଇ ଅନ୍ୟ ଭଣ୍ଡ ମୁହଁରେ କଦଳୀ ଗୁଞ୍ଜିଦେଇ ଆନନ୍ଦରେ ଜୟ ପତାକା ଉଡ଼ାଇ ଫେରିଲେ ।

---

## ଆଲ୍ ଦେଷ

ଲୋକେ କହନ୍ତି ଧନୀର କୁକୁର । କୁକୁର ଯେପରି ଅଇଁଠା ଭାତ ଗଣ୍ଡେ ପାଇଁରେ ଗୋଡ଼ାଇଥାଏ, ଧନୀର ଟଙ୍କା ଦି'ଟା ପାଇଁ ସେପରି ଆଜ୍ଞାଧୀନ ହୋଇ ରହିଥାଏ । ଏହା ଯେବେ ସତ, ତେବେ ଧନୀର କୁକୁର ଭଳି ଗାରବ ହୋଇ ରହେ ନାହିଁ କାହିଁକି ? ଆମ୍ଭ ବାଧିଲେ ଖାଉନ୍ଦକୁ ମୁହେଁ ମୁହେଁ ଜବାବ ଦେଇ ବାହାରି ଯାଏ କାହିଁକି ? ଏହାର କାରଣ କ'ଣ ? ଏହି ଦୃଷ୍ଟିରୁ ଆଜି କୁହାଯାଉଛି ଧନ ଦେଇ କେହି ମନକୁ କିଣିପାରେନା । ମନ ନେଇ ପେଟକୁ ଦେଇ ପିଠିକୁ ମାରିଲେ ସୁଦ୍ଧା ଲୋକେ ଖାଉନ୍ଦ ନିକଟରେ ପଡ଼ି-ଥାଆନ୍ତି । ତା'ର ପ୍ରମାଣ ଦେଖିବାକୁ ମିଳେ ଗୋପାଳର ଗ୍ରାମ ନିକଟବର୍ତ୍ତୀ ଜଣେ ମହାଜନଙ୍କ ନିକଟରେ ।

ସେ ମହାଜନଟି ଏତେ ଲୋଭୀ, ଏତେ କୃପଣ ଯେ, ତା ପାଖରେ ଧନୀର କେହିହେଲେ ଟିକି ପାରନ୍ତି ନାହିଁ ତା'ର ଏ ମନ୍ଦ ପ୍ରକୃତିରୁ ତାକୁ ତାର ପରିବାର ସହ ସାହି ପଡ଼ଶା ଆଦି ଲୋକେ ଘୃଣା କରନ୍ତି । ତଥାପି ସେ ମହାଜନ ବୁଢ଼ା ଧନୀର ଖୋଜିବାକୁ

ବାଦ୍ ଦଏନା । ଦିନେ ଗୋପାଳ ଭଣ୍ଡ ସଙ୍ଗରେ ହଠାତ୍ ମହାଜନ ବୁଢ଼ାର ସାକ୍ଷାତ ହେଲା । ସେ ଗୋପାଳଙ୍କୁ ଦେଖି ହସି ହସି କହିଲା ଗୋପାଳ ! ବେଶ୍ ଭଲ ଦେଖି ଚାକର ଗୋଟିଏ ଦେଇ ପାରିବୁ କି ; କିନ୍ତୁ ଲୋକଟା ଯେପରି ଖୁବ୍ କାମିକା ଓ ବିଶ୍ୱାସୀ ହୋଇଥିବ ମୁଁ ଏପରି ଗୋଟିଏ ଲୋକ ଖୋଜୁଁଛି । ଗୋପାଳ କହିଲା—ହଁ, ଏହା ମୁଁ କରି ପାରିବି । ଲୋକଟି ବେଶ୍ କାମିକା ଲୋକ । ଯେପରି ବିଶ୍ୱାସୀ, ସେହିପରି ପରିଶ୍ରମୀ ; କିନ୍ତୁ ଦୋଷ ମଧ୍ୟରେ ତା'ର ଟିକିଏ ଆଳୁଦୋଷ ଅଛି ।

ଗୋପାଳର କଥା ଶୁଣି ମହାଜନ ବୁଢ଼ା କହିଲା, ଆଳୁ ଦୋଷ ଗୋଟାଏ କ'ଣ ? ଲୋକଟା କ'ଣ ଆଳୁବାଳୁଆ ? ସେ ଯାହା ହେଉ ମୋ ପାଖରେ ଆଳୁଫାଳୁ ଦୋଷ ରହିବ ନାହିଁ ; କିନ୍ତୁ କେଉଁଦିନ ଆଣିବୁ କହ ତ ? ଗୋପାଳ କହିଲା—ଆଜ ଆଣିଦେବି ; କିନ୍ତୁ ତା ର ଅଗ୍ରୀମ ଦୁଇଶହ ଟଙ୍କା ଦରକାର ।

ମହାଜନ ବୁଢ଼ା କ'ଣ ଟିକିଏ ଭାବି ଦୁଇଶହ ଟଙ୍କା ଦେଇ କହିଲା ନେ ତାକୁ ଯେପରି ସନ୍ଧ୍ୟା ପୂର୍ବରୁ ପଠାଇଦେବୁ । ମହାଜନ ବୁଢା ଏହା କହି ଚାଲିଗଲା ।

ଗୋପାଳ ଟଙ୍କାତକ ପକେଟରେ ରଖି ସେହିଦିନ ସନ୍ଧ୍ୟା ବେଳକୁ ସେ ଲୋକଟିକୁ ନେଇ ମହାଜନ ଘରେ ଛାଡ଼ିଦେଇ ଆସିଲା । ଲୋକଟିର ଚେହେରା, ବ୍ୟବହାର ଓ କଥାବାର୍ତ୍ତାରେ ମହାଜନ ମନ ଆନନ୍ଦିତ ହୋଇଗଲା । ସେ ତାକୁ ସଙ୍ଗରେ ନେଇ ତାର ଖାଇବା, ପିଇବା, ଶୋଇବାର ବନ୍ଦୋବସ୍ତ କରିଦେଲା ।

କିଛିଦିନ ପରେ ଏକଦା ମହାଜନ ଗୋପାଳଙ୍କୁ ଦେଖି କହିଲା ଗୋପାଳ ! ସେ ବେଶ୍ କାମିକା ଲୋକ ହେଲେ କ'ଣ ହେବ, ତା'ର ଗୋଟିଏ ଦୁର୍ଗୁଣ ଅଛି । ଗୋପାଳ କହିଲା—କ'ଣ ଦେଖୁଛ ? ମହାଜନ ବିସ୍ମିତ ହୋଇ କହିଲା—ମୋର ବାଡ଼ିରୁ ପନିପରିବାଗୁଡ଼ିକ ନେଇ ଆମର ପଡ଼ିଶାରେ ଅନ୍ୟ ଲୋକଙ୍କୁ ଦେଇଦେଉଛି । ଏହା ଶୁଣି ଗୋପାଳ ମହାଜନଙ୍କୁ ବୋଧଦେଇ କହିଲା ସେ ଲୋକଟାର ସବୁ ଠିକ୍ ଏ ଅଳ୍ପଦୋଷ ଅଛି । ସେଥି-ପାଇଁ ପରା ମୁଁ ତୁମକୁ ପ୍ରଥମରୁ କହିଥିଲି । ହେ ଯାହାହେଉ—ଠିକ୍ ଏ ଲୋକଟି ଦୟାଳୁ । କିଏ କିଛି ମାଗିଲେ ସେ ନ ଦେଇ ରହି ପାରେନା ।

ମହାଜନ ଆଉ କିଛି ନ କହି ଚାଲି ଆସିଲା । ଦଶ ପନ୍ଦର ଦିନ ଗଲାପରେ ଗୋପାଳ ମହାଜନଙ୍କୁ ଦେଖି ପଚାରିଲା—ଲୋକଟି କି ପ୍ରକାର ଦେଖୁଛ ? ମହାଜନ ଉତ୍ତର ଦେଲା, ବେଶ୍ ଭଲ ଅଛି । କାମିକା ଲୋକଟିଏ ଏକା । ସକାଳୁ ସଞ୍ଜଯାଏ ତା' ହାତରୁ କାମ ଶେଷ ହେଉନ ; କିନ୍ତୁ ଦୋଷ ମଧ୍ୟରେ ଏତିକ ଯେ, ବସୁ ବସୁ ଢୁଳାଉଛି । ଡାକିଲେ ଶୁଣିବ ନାହିଁ । ଏକଥା ଶୁଣି ଗୋପାଳ କହିଲା—ତୁମକୁ ତ ମୁଁ କହିଛି, ଲୋକଟିର ଠିକ୍ ଏ ଅଳ୍ପଦୋଷ ଅଛି । ଲୋକଟି ଠିକ୍ ଏ ନିଦ୍ରାଳୁ ।

ମହାଜନ ଆଉ କିଛି ଉତ୍ତର ଦେଲା ନାହିଁ । ପୁଣି ମାସକ ପରେ ଗୋପାଳଙ୍କୁ ଦେଖି ପଚାରିଲା—ଗୋପାଳ ! ସେ ଲୋକଟାର ଗତିବିଧି ତ ଦିନକୁ ଦିନ ବଦଳି ଯାଉଛି । ଏଇ କେଇଦିନ ହେଲା ମୁଁ ନଜେ ଦେଖୁଛି, ମୋ ଜାମା ପକେଟରୁ ଟଙ୍କା ଦି'ଟଙ୍କା ଶୂନ୍ୟ ।

ସମସ୍ତ ସମୟରେ ଘରୁ ଛୁଆ ପିଲାଙ୍କର ଲୁଗାପଟା ବି ଚାଲିଯାଉଛି । ମୋର ଯେତେଦୂର ମନେ ହୁଏ—ତା ଛଡ଼ା ଆଉ କେହି ନେଇ-ନାହାନ୍ତି । ଏ କଥା ଶୁଣି ଗୋପାଳ କହିଲେ—ତା ହୋଇପାରେ । ଲୋକଟି କିନ୍ତୁ ଖୁବ୍ କାମିକା ଓ ବିଶ୍ୱାସୀ । କେବଳ ଦୋଷ ମଧ୍ୟରେ ଏଇ ଆଳୁ ଦୋଷଟି ଅଛି । ଲୋକଟି ଟିକିଏ ସ୍ନେହାଳୁ ।

ପୁଣି ମାସ ପରେ ଦୁଇମାସ ବିତିଗଲା । ମହାଜନ ଗୋପାଳଙ୍କୁ ଦେଖି ପୁଣି କହିଲେ - ବାଃ, ବେଶ୍ ଲୋକ ଦେଖୁଛ ତ ? ଲୋକ-ଟାର ସ୍ପର୍ଦ୍ଧା ତ ଦିନକୁ ଦିନ ବେଶ୍ ବଢ଼ି ଚାଲିଛି । ଦେଖ କରୁ କରୁ ଆମ ଛୁଆପିଲାଙ୍କ ସହିତ ଆଳାପ ଏବଂ ଆଲୋଚନା ବଢ଼ାଇ ଦେଲାଣି । ଡାକିଲେ ତ ସେମାନଙ୍କ ପାଖରୁ ଉଠୁନାହିଁ ।

ଗୋପାଳ ଭଣ୍ଡ ଟିକିଏ ହସିଦେଇ କହିଲେ ସେଥିପାଇଁ ଚିନ୍ତା କରନ୍ତୁ ନାହିଁ ମହାଜନ ବାବୁ । ଲୋକଟା ଠିକ୍ ଚରିତ୍ରବାନ ; କିନ୍ତୁ ଦୋଷ ମଧ୍ୟରେ ଟିକିଏ ଆଳୁଦୋଷ ଅଛି ଲୋକଟା ଟିକିଏ ପ୍ରେମାଳୁ । ଆଉ ଥରେ ମହାଜନ କହିଲେ— ମୁଁ ଲୋକଟାର ଚାଲିଚଳନ ଲକ୍ଷ୍ୟ କରି ଭାବୁଛି, ସେଇଟା ଭଲ ଲୋକ ନୁହେଁ, ଗୋଟିଏ ଚରିତ୍ରହୀନ ଲମ୍ପଟ ।

ଗୋପାଳ ଚକ୍ଷୁ ବିସ୍ଫାରିତ କରି କହିଲେ—ଛି, ଛି, ଛି ! ଏପରି କଥା ମୁହଁରେ ଧରନ୍ତୁ ନାହିଁ । ଗରିବ ଚାକର ସେ । ପେଟ ଲାଗି ଚାକିରି କରୁଛି । ତାକୁ ଆପଣ ଚରିତ୍ରହୀନ ଲମ୍ପଟ କହୁଛନ୍ତି ; କିନ୍ତୁ ସେ ଏପରି ନୁହେଁ । ଟିକିଏ ଆଳୁଦୋଷ ଥାଇ ପାରେ ।

ମହାରାଜ ଟିକିଏ ରାଗିଯାଇ କହିଲେ—ସେ କଥା ମୋତେ ଆଉ କହନା ଗୋପାଳ ! ସେ ଯଦି ଭଲ ଲୋକ ତା' ହେଲେ ରାତିସାରା ଘରେ ନ ରହି ବାହାରକୁ ଯାଉଛି କାହିଁକି ? ଖାଲି ଯାଉନି ଯେ, ମୋ ଘରୁ ଜିନିଷପତ୍ର ନେଇ ଗାଁର ଗୋଟିଏ ସ୍ତ୍ରୀ ଲୋକ ଘରେ ପଶୁଛି ।

ଗୋପାଳ ହସି ହସି କହିଲେ— ଓଃ, ଏଇ କଥା । ମୁଁ ତ ତାହା ଆଗରୁ କହି ଦେଇଥିଲି । ଲୋକଟାର କମତାମ, ଗୁଣଗ୍ରାମ ସବୁ ଭଲ ; କିନ୍ତୁ ଟିକିଏ ଆଉଦୋଷ ଅଛି । ଲୋକଟା କାମାତୁ ।

ପୁଣି ଦୁଃଖେ ସୁଖେ ଗୋଟିଏ ମାସ କଟିଛି କି ନାହିଁ, ମହାରାଜ ଗୋପାଳକୁ ଡାକି ବିରକ୍ତ ହୋଇ କହିଲେ—କରେ ଗୋପାଳ କୁ କେମିତିକା ଲୋକଟା ଦେଇଛୁ କହିଲୁ ? ସେ ମୋର ଚାକର ହୋଇ ମୋର ଦାନା ଖାଇ, ପୁଣି ମୋ'ର ମାଆକୁ ମାରିବ ? ଏ କଥା ବୁଝିବୁ ତ ବୁଝ, ନ ହେଲେ ବଡ଼ ଅଡୁଆ ହେବ ।

ମହାରାଜ କଥା ଶୁଣି ଗୋପାଳ କହିଲେ— ବାବୁ ଦୁନିଆରେ ତ ଗୋଟିଏ ହାତରେ ତାଳି ବାଜେନା । ତୁମ ମା' ବୁଢ଼ୀ ତାକୁ କିଛି କହିଥିବ ବୋଲି ସିନା ସେ ମାରିଲା । ଲୋକଟି ଟିକିଏ କୋପାତୁ ବୋଲି ମାନି ନେଲ ।

ଏ କଥା ଶୁଣି ମହାରାଜ କହିଲେ—ହଁ ବାବୁ ! ଆଉ ଦୋଷ ଅଛି ଯେ ; କିନ୍ତୁ ଖମୁଆତୁ । ବଳାତ ଆତୁ ହୋଇଥିଲେ କଥା ନଥିଲା । ଏ ଯେ ଦମ୍ଭାତୁ, ନିଦ୍ରାତୁ, ଭସ୍ମାତୁ, ସ୍ନେହାତୁ, ପ୍ରେମାତୁ ଶେଷକୁ ପୁଣି ଥିଲା କୋପାତୁ । ତୁମର ଏଇ

ଆକ୍ରୁ ବସ୍ତାକୁ ନେଇ ବର୍ତ୍ତମାନ ଗଲ । ମୋର ଏ ଆକ୍ରୁରେ ଆଉ ଦରକାର ନାହିଁ ।

ଗୋପାଳ ଜନର ଲୋକଟିକୁ ତାର ଆକ୍ରୁବୋଷ ପାଇଁ ସଙ୍ଗରେ ନେଇ ଘରକୁ ଫେରିଲେ ।

---

## ପଣ୍ଡିତର ଘୋଡ଼ା ଦଉଡ଼

ଥରେ ଜଣେ ଦିଗବିଜୟୀ ପଣ୍ଡିତ ବହୁ ଦେଶ ଜୟ କରି ଶେଷରେ ବଙ୍ଗଦେଶ ଜୟ କରିବା ଆଶାରେ ମୁର୍ଶିଦାବାଦର ନବାବ ସିରାଜଉଦ୍ଦୌଲାଙ୍କ ରାଜଦରବାରରେ ପହଞ୍ଚି କହିଲେ— ନବାବ ସାହେବ ମୁଁ ଜଣେ ପଣ୍ଡିତ, ପ୍ରତ୍ୟେକ ଦେଶ ବିଦ୍ୟାରେ ଜୟ କରି ଏଠାକୁ ଆସିଛି । ଯଦି ଆପଣଙ୍କର କେହି ପଣ୍ଡିତ ଅଛନ୍ତି ତାଙ୍କୁ ଡାକନ୍ତୁ ମୋ ସଙ୍ଗରେ ତର୍କହେବ । ଯେ ହାରିଯିବ, ସେ ଅନ୍ୟର ଅନୁଗତ ହେବ । ଏହା ମୋର ପଣ ।

ନବାବ ଭଣ୍ଡଙ୍କ ଯୁକ୍ତିତର୍କ ଶୁଣିବାକୁ ଭଲ ପାଆନ୍ତି । ସେ ତାଙ୍କ ଜୀବନରେ ସବୁ ପ୍ରକାର ଲଢ଼େଇ ଦେଖିଛନ୍ତି ; କିନ୍ତୁ ପଣ୍ଡିତମାନଙ୍କ ମଧ୍ୟରେ ହେଉଥିବା ଲଢ଼େଇ ଅତ୍ୟନ୍ତ କଉତୁକିଆ ଗୋଟିଏ ପଣ୍ଡିତ ଯେତେବେଳେ ସ୍ୱରୂପେ ଉପସ୍ଥିତ ହୋଇଛି, ତାକୁ ଛାଡ଼ିବା ଉଚିତ ନୁହେଁ । ଥରେ ମାତ୍ର ପଣ୍ଡିତମାନଙ୍କ ଲଢ଼େଇ ଦେଖିବା ଉଚିତ । ଏହା ଭାବି ରାଜା କୃଷ୍ଣଚନ୍ଦ୍ରଙ୍କ ପାଖକୁ ଲେଖି ଚିଠିଟାଏ ଜଣାଇଲେ ମହାରାଜ କୃଷ୍ଣଚନ୍ଦ୍ର, ଆମର ରାଜସଭାକୁ

ଜଣେ ପଣ୍ଡିତ ଆସିଛନ୍ତି । ତୁମ ରାଜସଭା ମଧ୍ୟରେ ଥିବା ପଣ୍ଡିତମାନଙ୍କ ମଧ୍ୟରୁ ଜଣକୁ ଅତଶୀଘ୍ର ପଠାଅ । ଯେପରି ସେ ଏ ପଣ୍ଡିତଙ୍କୁ ଜିଣିପାରିବ । ନ ଜିଣି ପାରିଲେ ସେ ଏହାର ଆଜ୍ଞାଧୀନ ହେବ ।

ରାଜା କୃଷ୍ଣଚନ୍ଦ୍ର ଏ ସମସ୍ତ ବିଷୟ ନେଇ ତାଙ୍କର ପଣ୍ଡିତମାନଙ୍କୁ ପଚାରିଲେ । ପଣ୍ଡିତମାନଙ୍କ ମଧ୍ୟରୁ କେହି ରାଜି ହେଲେ ନାହିଁ ଯିବାକୁ ; କାରଣ ଜଣେ ନବାବଙ୍କ ଦରବାରକୁ ଯାଇ, ପଣ୍ଡିତଙ୍କୁ ପରାସ୍ତ କରିବାକୁ ସାହସ ହେଲାନାହିଁ । ରାଜା ବିଷମ ସମସ୍ୟାରେ ପଡ଼ିଲେ । ମନେ ମନେ ଭାବିଲେ, ମୁଁ ଯଦି ନ ପଠାଏ, ନବାବ ରାଗିକରି ମୋତେ ଅପଦସ୍ତ କରିବେ ।

ରାଜା ଏହିପରି ଭାବି ମନସ୍ତାପରେ ବସିଛନ୍ତି, ସେତିକବେଳେ ଗୋପାଳ ଭଣ୍ଡ ପହଞ୍ଚି ଯାଇ ପଚାରିଲା, ମହାରାଜ ! ଆପଣ ଏପରି ଅବସ୍ଥାରେ ବସିଛନ୍ତି କାହିଁକି ? ରାଜା ସମସ୍ତ କଥା କହିଲେ । ଗୋପାଳ ଶୁଣି ହସି ହସି କହିଲା—ଏହି କଥା ପାଇଁ ଆପଣ ଚିନ୍ତା କରୁଛନ୍ତି ? ଆଚ୍ଛା । ମୁଁ ଯିବି, କେହି ନ ଗଲେ ନାହିଁ ।

ଏହା ଶୁଣି ରାଜା ଆଶ୍ଚର୍ଯ୍ୟ ହୋଇ କହିଲେ—କ'ଣ ଗୋପାଳ ତୁମେ ଯିବ ? ଯେଉଁଠାକୁ ଯିବାକୁ ବଡ଼ ବଡ଼ ପଣ୍ଡିତମାନେ ସାହସ କରୁ ନାହାନ୍ତି, ସେଠାକୁ ତୁମେ କିପରି ଯିବ ? ସେଠାରେ ତ ଭଣ୍ଡ ଚର୍ଚ୍ଚା ହେବ ନାହିଁ, ହେବ ପଣ୍ଡିତ ଚର୍ଚ୍ଚା । ଗୋପାଳ କହିଲା—ମୁଁ ତ ସେଇଆ ଖୋଜୁଛି । ଆପଣ ମୋ କଥା ବିଶ୍ୱାସ କରି ମୋତେ ପଠାନ୍ତୁ, ଦେଖିବେ—ମୋର ବିଦ୍ୟାବୁଦ୍ଧି ବଳରେ ମୁଁ କିପରି ସେ ପଣ୍ଡିତଙ୍କୁ ଦେଶଛଡ଼ା

କରି ଦେଇ ଆସିବ । ଏ କଥାରେ ରାଜା ଟିକିଏ ଆଶ୍ୱସ୍ତ ହୋଇ ଗୋପାଳକୁ ମୁର୍ଶିଦାବାଦ ପଠାଇବାକୁ ଆଦେଶ ଦେଲେ ।

ତା’ ପରଦିନ ଗୋପାଳ ଗୋଟିଏ ପଣ୍ଡିତ ବେଶ ସାଜ ମାଳା ତିଳକ ପିନ୍ଧି ତା’ର ସାଥୀ ଖଟ୍ୱାଙ୍ଗ ପୁରାଣ, ଅର୍ଥାତ୍ ଭଙ୍ଗା ଖଟିଆ ଗୋଡ଼ଟିକୁ ଧରି ନବାବଙ୍କ ଦରବାରକୁ ବାହାରିଗଲା । ନବାବ ପଣ୍ଡିତରୂପୀ ଗୋପାଳକୁ ଦେଖି ଅତି ଉତ୍ସାହରେ ସଭା କରି ବସିଲେ । ତା ପରେ ଦିଗବିଜୟୀ ପଣ୍ଡିତଙ୍କୁ ଡାକି ତର୍କଯୁଦ୍ଧ ଆରମ୍ଭ କରିବାକୁ ଆଦେଶ ଦେଲେ । ନବାବଙ୍କ ଆଦେଶ ପାଇ ପଣ୍ଡିତ ଦୁହେଁ କ୍ରମେ କଥା ଆରମ୍ଭ କଲେ । ଦିଗବିଜୟୀ ପଣ୍ଡିତ କଥା-ଛଳରେ ଗୋପାଳକୁ ପଚାରିଲେ—ପଣ୍ଡିତେ ସେ ପୋଥିଟି କି ପୋଥି ? ଗୋପାଳ କହିଲା—ଏ ଅତି ଦୁଷ୍ପ୍ରାପ୍ୟ ଗ୍ରନ୍ଥ; ଖଟ୍ୱାଙ୍ଗ ପୁରାଣ । ଚତୁଷ୍ପାଦର ଭଙ୍ଗା ପଦ ।

ଏକଥା ଶୁଣି ପଣ୍ଡିତ କପାଳ କୁଞ୍ଚିତ କରି ଭାବିବାକୁ ଲାଗିଲେ ମୁଁ ତ ଏ ପୁରାଣ କେବେ ହେଲେ ଦେଖିନାହିଁ କି ଶୁଣି ନାହିଁ । ତେବେ ଖଟ୍ୱାଙ୍ଗ ପୁରାଣଟି ମୋତେ ଦେଖାଇ ତା’ର ଗୁଣ କହିବେ କି ? ଗୋପାଳ କହିଲା—ନା, ମୁଁ ଅପରକୁ ମୋର ପୁରାଣ ଦେଖାଏ ନାହିଁ । ଆପଣ ବସନ୍ତୁ, ମୁଁ ଏ ପୋଥିର ଅର୍ଥ କହିବି ।

ପଣ୍ଡିତ ଗୋପାଳର ଅଙ୍ଗଭଙ୍ଗୀ ଓ କଥାବାର୍ତ୍ତା ଶୁଣି ଅବାକ ହୋଇ ବସି ରହିଲା । ଗୋପାଳ ନବାବଙ୍କୁ ସମ୍ବୋଧନ କରି କହିଲା, ନବାବ ସାହେବ ! ମୋର ଗୋଟିଏ ନିବେଦନ ଅଛି । ମୁଁ ଯାହାକି ନିବେଦନ କରିବି ମୋର ସ୍ୱାର୍ଥ ପାଇଁ ନୁହେଁ, ଆପଣଙ୍କର ମଙ୍ଗଳ ପାଇଁ ; କାରଣ ଆପଣଙ୍କର ସଭା ମଧ୍ୟରେ ଏହି ଯେଉଁ ଦିଗବିଜୟୀ

ପଣ୍ଡିତ ବସିଛନ୍ତି, ସେ ଅତି ସୁଲକ୍ଷଣ ପୁରୁଷ । କୋଟି କୋଟି ଲୋକଙ୍କ ମଧ୍ୟରେ ଦୈବାତ୍ ଭାଗ୍ୟ ନେଇ ଏପରି ଲୋକର ଦର୍ଶନ ମିଳେ । ମୋର ଏହି ଖଣ୍ଡାଙ୍ଗ ପୁରାଣରେ ଲେଖା ହୋଇଛି । ଆକାଶର ଯେଉଁ ତିଥି ନକ୍ଷତ୍ର ଏକତ୍ରିତ ହୋଇଚନ୍ତି, ଏପରି ତିଥି ନକ୍ଷତ୍ର କେବେ କପରି ହୁଏ । ଏହିପରି ସର୍ବ ସୁଲକ୍ଷଣ ଯୁକ୍ତ ପଣ୍ଡିତଙ୍କ ମୁଣ୍ଡରୁ କେତେ କେରା ବାଳ ଉପାଡ଼ି ପାରିଲେ ବହୁ ଆପଦ ବିପଦରୁ ରକ୍ଷା ପାଇବେ । ମୁଁ ଆପଣଙ୍କ ଆଦେଶକୁ ଅପେକ୍ଷା କରିଛି । ଆପଣ ଆଦେଶ ଦେଲେ ମୁଁ ଏହାଙ୍କ ମୁଣ୍ଡରୁ କେତେ କେରା ବାଳ ଉପାଡ଼ି ରଖିବି ।

ଏକଥା ଶୁଣି ନବାବ ଆଦେଶ ଦେଲେ କେଶ ଉପାଡ଼ିବାକୁ । ବହୁଲୋକ ଯାଇ ପଣ୍ଡିତଙ୍କ କେଶକୁ ଟାଣିବାକୁ ଲାଗିଲେ । ପଣ୍ଡିତ କଷ୍ଟରେ ରାମ ରାମ କହି ପ୍ରାଣ ବିକଳରେ ରାଜ୍ୟ ସୀମାରୁ ବାହାରି-ଯାଇ ନିଃଶ୍ୱାସ ମାରିଲେ ।

ପଣ୍ଡିତ ପଳାଇବା ଦେଖି ନବାବ ଗୋପାଳକୁ ବହୁ ଉପହାର ଦେଲେ । ଗୋପାଳ ଉପହାର ନେଇ ରାଜା କୃଷ୍ଣଚନ୍ଦ୍ରଙ୍କୁ ସମସ୍ତ କଥା କହି ଧନ୍ୟ ଧନ୍ୟ ଉପାଧି ନେଇ ଘରକୁ ଫେରିଲେ ।



## ଯେଉଁ ଘଣାର ତେଲ, ସେହି ଘଣାର ପିଡ଼ିଆ

ରାଜ୍ୟରେ ରାଜାଙ୍କର ଗୋପାଳ ଭଣ୍ଡ ପରି ଆହୁରି ଚାରି ପାଞ୍ଚଜଣ ଭଣ୍ଡ ଥିଲେ ; କିନ୍ତୁ ଗୋପାଳ ଭଣ୍ଡପରି ଚତୁର କିମ୍ବା

ବୁଦ୍ଧିଆ ନୁହନ୍ତି ; ତେଣୁ ଗୋପାଳର ବୁଦ୍ଧି କୌଶଳ ଯୋଗୁଁ ତାର ନାମ ଜଗତରେ ବିଖ୍ୟାତ ହୋଇଗଲା ; ତେଣୁ ରାଜା ଗୋପାଳକୁ ଭଲ ପାଉଥିଲେ । ଅନ୍ୟ ଭଣ୍ଡମାନେ ଏହା ସହି ନପାରି ଗୋପାଳ ଉପରେ ରାଗି ମନେ ମନେ ଭାବୁଥାନ୍ତି କିପରି ଗୋପାଳକୁ ମାରି-ଦେବାପାଇଁ । ସେହି ଭଣ୍ଡମାନଙ୍କ ମଧ୍ୟରୁ ଅଜୁ ଗୋସେଇଁ ନାମକ ଭଣ୍ଡ ଥାଆନ୍ତି । ଅଜୁ ଗୋସେଇଁଙ୍କ ଖ୍ୟାତି ଗୋପାଳ ଆସିବା ଦିନ-ଠାରୁ କମିଗଲା ; ତେଣୁ ବେଶି ରାଗୀ ଥାଆନ୍ତି । ଯେତେବେଳେ ବେଳ ଦେଖି ସେ ଗୋପାଳକୁ ଠକାଇବାକୁ ଚେଷ୍ଟାକରେ, ସେ ବରଂ ନିଜେ ଠକି ମୁହଁକୁ ତଳକୁ ମାରି ଚାଲିଯାଏ ।

ଗୋପାଳର ଆଦ୍ୟରୁ ଶିରବ୍ୟଥା ବେମାରି ଅଛି । କାଳ ବେଳ ଦେଇ କେଉଁଦିନ କିପରି ବାହାରି ପଡ଼େ । ଏକଦା କୌଣସି କାରଣରୁ ସେହି ବେମାରିରେ ପୀଡ଼ିତ ହୋଇ ରାଜ ସଭାରେ ଯାଇ ବସି ନିଜେ ନିଜେ ମୁଣ୍ଡ ଚିପୁଥାଏ ଏବଂ ମଝିରେ ମଝିରେ ଉଃହୋଃ, ଆହା ବୋଲି କହୁଥାଏ । ରାଜା ଏପରି ଅବସ୍ଥା ଦେଖି ପଚାରିବାରୁ ସେ ସମସ୍ତ କଥା କହିଲା । ଅଜୁ ଗୋସେଇଁ ଏହା ଶୁଣି କହିଲା, ଏହି ସାମାନ୍ୟ ରୋଗପାଇଁ ତୁମେ ଏପରି ଚିନ୍ତିତ । ମୋତେ ଆଗରୁ କହୁନଥିଲ କାହିଁକି ? ମୁଁ ଚମତ୍କାର ଔଷଧ ରଖିଛି । ତାର ନାମ ଧନ୍ୱନ୍ତରି କଳ୍କ । ଥରେ କିମ୍ବା ଦୁଇଥର ମାଲିସ କରିଦେଲେ ସେ ରୋଗ ଆଉ ଦେଖା ଦେବ ନାହିଁ । ତୋର ଯଦି ଏତେ ଯନ୍ତ୍ରଣା ହେଉଛି, ତା'ହେଲେ ତୁ ଯିବାବେଳେ ମୋଠାରୁ ନେଇଯିବୁ ।

ଗୋପାଳ ଶୀଘ୍ର ଗୋସେଇଁଙ୍କ ଘରଆଡ଼େ ଚାଲିଗଲା, ରାଜାଙ୍କଠାରୁ ବିଦାୟ ନେଇ ଔଷଧ ଆଣିବାକୁ । ସେତେବେଳକୁ

ଅଜ୍ ଗୋସେଇଁ ବୁଲିଯାଇ ଆଗରୁ ଔଷଧ ତିଆରି କରି ସାରି-ଥାଆନ୍ତି । ଅଜ୍ ଗୋସେଇଁ ଗୋପାଳକୁ ଔଷଧ ଦେଇ କହିଲେ, ଗୋପାଳ ! ଔଷଧ ମାଲିସ କରିବା ସଙ୍ଗେ ସଙ୍ଗେ ଥରେ ଦୁଇଥର ଶୁଙ୍ଘି ଦେବୁ । ଯେପରି ତାର ଗନ୍ଧ ବାହାର ନଯାଏ, ବାହାରିଗଲେ ପୁଣି ଅସୁବିଧା ।

ଗୋପାଳ ଘରେ ପହଞ୍ଚି ଔଷଧ ମାଲିସ କରିବାକୁ ବସି ଶିଶିର ଠିପି ଖୋଲି ଦେଖେ ତ ତେଲ ପରିବର୍ତ୍ତେ ଜଳ ପରି କ'ଣ ଗୁଡ଼ାଏ ଜିନିଷ । ତା ମନରେ ସନ୍ଦେହ ହେଲା ଏବଂ ଗୋସେଇଁ କହିଥିବା କଥା ମନେ ପଡ଼ିଲା । ଶିଶିର ଜଳକୁ ନେଇ ନାକ ପାଖରେ ଲଗା-ଇଲା କେବଳ ଗନ୍ଧହେଲା ପରିସ୍ରା ପରି । ଗୋପାଳ ମନେ ମନେ ବହୁତ ରାଗିଗଲା ଏବଂ କହିଲା, ଶଳା କେଉଁଥିରେ ମୋତେ ଜବତ କରି ପାରିଲା ନାହିଁ, ଏଇଥିରେ ଜବତ୍ କଲା । ଆଚ୍ଛା, ଦେଖିବା ବ୍ରାହ୍ମଣ ବୁଢ଼ାକୁ । ଏହାର ପ୍ରତିଶୋଧ ନ ନେବା ପର୍ଯ୍ୟନ୍ତ ମୋର ମନରେ ଅବଶୋଷ ରହିଯିବ ।

ତେଣେ ଏତେବଡ଼ କାମଟାଏ କରି ଗୋସାଇଁ ମନେ ମନେ ବହୁତ ଖୁସି ହେଉଥାନ୍ତି । ସଭାରେ ଆସି ତାଙ୍କର ପୌରୁଷ କଥାଟା କହି ହସର ଜୁଆର ଛୁଟାଇ ଦେଲେ । ରାଜା ପ୍ରଥମେ ତାହା କଥାରେ ହସିଦେଲେ ; କିନ୍ତୁ ପରେ କ'ଣ ଭାବିଲେ କେଜାଣି କହିଲେ, ଗୋସେଇଁ ! ତୁମର ଖରାପ ବେଳ ଆସିଗଲା । ଏଣିକି ସାବଧାନରେ ରୁହ । ରାଜାଙ୍କର କଥା ଶୁଣି ଗୋସେଇଁ କହିଲେ— ନା ରାଜା ! ମୁଁ ଏଥର ତାକୁ ଜବତ୍' କରି ଦେଇଛି । ଜୋକ ମୁହଁରେ ଲୁଣ ଏବଂ ସାପ ମୁହଁରେ ଗଦ ଦେଲାପରି ମୋଡ଼ି ହୋଇ ରହିବ ।

ସେଦିନ ଗଲା ତା’ ପରଦିନ ଗୋପାଳ ଆସି ରାଜସଭାରେ ପହଞ୍ଚିବାରୁ ଗୋସେଇଁ ସହ ସମସ୍ତେ ହସି ହସି କହିଲେ—ଗୋପାଳ ଭଲ ତ, ମୁଣ୍ଡବିନ୍ଧା ଭଲ ହୋଇଛି ତ ? ଗୋପାଳ କହିଲା—ହଁ, ଗୋସେଇଁ ଯେଉଁ ନାଗପାତା ଔଷଧ ଦେଇଥିଲେ ସେଥିରେ ମୋର ରୋଗ ଛାଡ଼ି ଯାଇଛି । ସେହି ଔଷଧ ତେଜରେ କାଲିଠାରୁ ନିଦରେ ନ ଶୋଇ ଚେଇଁ ରହିଛି । ଏକଥା ଶୁଣି ସମସ୍ତେ ହେଁ ହେଁ ହୋଇ ହସି ଉଠିଲେ ।

ଅଜୁ ଗୋସେଇଁ ବଡ଼ ନିଷ୍ଠାବାନ ଲୋକ । ସନ୍ଧ୍ୟା ସକାଳେ ବାହାର ପାଣି ଯାଇ ସାତବର ହାତ ମାଟି କରନ୍ତି । ତା ପରେ ପିଢ଼ଆ ହାତରେ ଘଷି ଡେଣିକ ପାହା କରିବାର କଥା କରନ୍ତି । ସେଥିପାଇଁ ସେ ଗୋଟିଏ ଭଣ୍ଡାରେ ସବୁବେଳେ ପିଢ଼ଆ ସାଇତି ରଖିଥାନ୍ତି । ବାହାର ପାଣି ଗଲାବେଳେ ସେଥିରୁ ମୁଠାଏ ନେଇ ପୋଖରୀ ଘାଟରେ ରଖି ଥାଆନ୍ତି । ଏ ସମସ୍ତ କଥା ଗୋପାଳ ଜାଣେ । ଏହି ଅପେକ୍ଷାରେ ସେ ଥାଏ ।

ଦିନେ ସନ୍ଧ୍ୟା ସମୟରେ ଗୋସେଇଁ ରାଜସଭାକୁ ଆସନ୍ତେ, ଗୋସେଇଁଙ୍କ ବସାକୁ ଗୋପାଳ ଯାଇ ଭଣ୍ଡାରୁ ପିଢ଼ଆ ଗୁଡ଼ିକ ଫୋପାଡ଼ି ଦେଲା । ପିଢ଼ଆ ପରିବର୍ତ୍ତେ କ’ଣ ଗୁଡ଼ାଏ ରଖିଦେଇ ନ ଜାଣିଲା ପରି ରାଜସଭାକୁ ଚାଲି ଆସିବା ପରେ ସଭା ଭଙ୍ଗ ହେଲା ।

ରାଜାଙ୍କର ଗୋଟିଏ ଅଭ୍ୟାସ ଥାଏ ଯେ, ସେ ପ୍ରତିଦିନ ପ୍ରତ୍ୟୁଷରୁ ଉଠି ବାୟୁ ସେବନ କରିବା ଲାଗି ପୋଖରୀ ପାଖରେ ଥିବା ଉଦ୍ୟାନ ମଧ୍ୟକୁ ଯାଇ ଭ୍ରମଣ କରନ୍ତି । ତା ପରଦିନ ଭୋର୍‌ରୁ ରାଜା

ଗୋପାଳଙ୍କୁ ସେଠାରେ ଦେଖି ପଚାରିଲେ—କି ଗୋପାଳ ! ତୁମେ କୁଆଡ଼େ ? ଗୋପାଳ ଗୋଟିଏ ନମସ୍କାର ହୋଇ କହିଲା—ମୁଁ ଯେଉଁଥିଲାଗି ଆସିଛି ଆଜ୍ଞା ତାହା କିଛିକ୍ଷଣପରେ ଜାଣି ପାରିବେ । ରାଜା ଆଉ ଗୋପାଳକୁ କିଛି ପଚାରିଲେ ନାହିଁ । ଗୋପାଳ ରାଜାଙ୍କ ସଙ୍ଗରେ ବୁଲି ବୁଲି ଦେଖିଲା, ଗୋସେଇଁ ପୋଖରୀ ଘାଟରେ ପିଢ଼ିଆ ରଖିଦେଇ ବାହାର ପାଣି ଯାଇଛି । ତହୁଁ ସେ ରାଜାଙ୍କୁ କହିଲା—ଆଜ୍ଞା ଟିକିଏ ଘାଟ ପାଖକୁ ବୁଲନ୍ତୁ । ରାଜା ଗୋପାଳର କଥା କିଛି ବୁଝି ନ ପାରି ତା' କଥା ଅନୁଯାୟୀ ଘାଟଆଡ଼କୁ ବୁଲିଲେ ଗୋପାଳ ଯାଇ ଘାଟର ପାବଚ୍ଛ ଉପରେ ବସିଲା । ଗୋପାଳ ବସିବା ଦେଖି କେତେଜଣ ଆସି ତାହାର ପାଖରେ ବସି ନାନାଦି ହାସ୍ୟରସର ଆଲୋଚନା କଲେ । ରାଜା ଘାଟ ପାଖରେ ଟହଲି ମାରୁଥାଆନ୍ତି ।

କିଛିକ୍ଷଣ ପରେ ଗୋସେଇଁ ସେହି ଘାଟରେ ଆସି ଆଗେ ହାତବାର ମାଟିହାତ କଲେ । ତା' ପରେ ପିଢ଼ିଆ ଆଣି ହାତରେ ଭଲକରି ଘଷୁ ଘଷୁ ଦୁର୍ଗନ୍ଧରେ ନାକ ତାଙ୍କର ଫାଟି ପଡ଼ିଲା । ସେ ବିରକ୍ତ ହୋଇ କହି ପକାଇଲେ—ଛି, ଆଜ ଏ ପିଢ଼ିଆ ଗୁଡ଼ାକର ଏତେ ଦୁର୍ଗନ୍ଧ କାହିଁକି ? ଏହାକହି ହାତଟିକୁ ନାକ ପାଖକୁ ନେଇ ଶୁଙ୍ଘି ଦୁଇଥର ବାନ୍ତକରି ପକାଇଲେ । ତା ପରେ ସେ ଛି, ଛି, ଥୁ ଥୁ କରି ହାତଟାକୁ ପକ୍କା ପାବଚ୍ଛ ଉପରେ ଘଷିବାକୁ ଲାଗିଲେ ।

ଗୋସେଇଁଙ୍କର ଏପରି ହେବାର ଅବସ୍ଥା ଦେଖି ରାଜା ଘାଟ ଉପରେ ଛିଡ଼ା ହୋଇ ପଚାରିଲେ—ଗୋସାଇଁ ! ତୁମର କ'ଣ ଏପରି

ଦେଖ ଯେ, ତୁମେ ଛୁ ଛୁ କରି ବାନ୍ତ କରୁଛ ? ଗୋସାଇଁ ଥ ଥ ଗମ ଗମ କହି ଜଳ ଭିତରକୁ ପଶିଯାଇ କହିଲେ, ମହାରାଜ ପିଢ଼ଆ ବୋଲି ଯାହାକୁ ହାତରେ ଘଷିଲି ସେଗୁଡ଼ିକ ପିଢ଼ଆ ନୁହେଁ ମଣିଷର ବିଷ୍ଠା । ରାଜା ଚମକି ଉଠି କହିଲେ—ସେ ସବୁ ତୁମ ଭଣ୍ଡରେ ରଖିଲ କିଏ ? ରାଜାଙ୍କ ପାଟିରୁ କଥା ନ ସରୁଣୁ ବସିଥିବା ଲୋକେ ଦୌଡ଼ିଯାଇ ଦେଖନ୍ତି ତ ପ୍ରକୃତରେ ମଣିଷ ବିଷ୍ଠା ।

ଗୋସାଇଁଙ୍କର ହାତରୁ ଗନ୍ଧ ପିବାପାଇଁ ସମସ୍ତ ଚେଷ୍ଟା ବିଫଳ ହେଲା, ସେ ପୁଣି ଗୋବର ନେଇ ଘଷିବାକୁ ଲାଗିଲେ । ସେ ପର୍ଯ୍ୟନ୍ତ ଗୋପାଳ ଭଣ୍ଡ ନୀରବ ହୋଇ ବସିଥାଏ । ମଣ୍ଡିତଙ୍କର ଏପରି ଅସ୍ତ ବ୍ୟସ୍ତ ଦେଖି ସେ ହସି ହସି କହିଲା—ଗୋସେଇଁ ! ହାତରେ ମାଟି, ପିଢ଼ଆ ମାରି ପୁଣି ଗୋବର ମାରୁଛ କାହିଁକି ? ଏ ତ ବେଶ୍ ଭଲ ପିଢ଼ଆ । ତୁମେ ସେଦିନ ଯେଉଁ ଘଣ୍ଟାର ଚେଳ ଦେଇଥିଲ ଏ ସେଇ ଘଣାର ପିଢ଼ଆ ।

ଏକଥା ଶୁଣି ଗୋସେଇଁ ରାଗିଯାଇ କହିଲେ-- ଛା'ହେଲେ..କୁ ଏଇଅଁ କରିଛୁ । ଖାଲି ଭସ୍ମ ହୋଇ ଯା । ରାଜା, ଗୋପାଳ ହସି ହସି ଘରକୁ ଫେରିଲେ ।

———

## ଅଦ୍ଭୁତ ବିଭୁତି

ନବାବମାନେ ରାଜା ମହାଜନଙ୍କ ସବୁବେଳେ କଡ଼ା ଆଇନ ବଳରେ ଶାସନ କରୁଥାନ୍ତି ; କାରଣ ସେମାନେ ଏହା ନ କଲେ

ତାଙ୍କର ପ୍ରକୋପରେ ଉଦ୍ଧାର ଘଟି ପାରିବ ନାହିଁ । କୃଷ୍ଣଚନ୍ଦ୍ର ରାଜାଙ୍କୁ ବହୁତ ବାର ନବାବ ଧମକେଇ ପତ୍ର ଲେଖନ୍ତି । ପୁଣି କୌଣସି ଏକଦିନ ଲେଖିଲେ—ରାଜା କୃଷ୍ଣଚନ୍ଦ୍ର ଜାଣିବ, ମୋର ରାଜ ଭଣ୍ଡାରରେ ଯେଉଁ ଦ୍ରବ୍ୟ ନାହିଁ, ତାହା ଅତିଶୀଘ୍ର ଯେପରି ଆମର ହସ୍ତଗତ ହୁଏ । ନ ହେଲେ ତୁମର ପରିଣାମ ବହୁତ ଖରାପ ହେବ । ଏହିପରି ଚିଠି ପଢ଼ି ମହାରାଜାଙ୍କର ମୁଣ୍ଡ ଏକାବେଳକେ ଖରାପ ହୋଇଗଲା । ସେ ଭାବିଲେ ଯେଉଁ ନବାବ ବଙ୍ଗ, ବିହାର ଓ ଓଡ଼ିଶା ପ୍ରଭୃତି ଜୟକରି ଯେତେ ଦୁର୍ଲ୍ଲଭ ବସ୍ତୁ ଆଣିଛନ୍ତି, ପୁଣି ଆଉ କେଉଁ ବସ୍ତୁର ଅଭାବ ହେଲା ଯେ, ମୋ ପାଖକୁ ଲେଖିଛନ୍ତି । ତାଙ୍କ ରାଜ ଭଣ୍ଡାରରେ ତ ସୂତାରୁ ମୁକ୍ତା ପର୍ଯ୍ୟନ୍ତ ଅଛି । ଏଥିରେ କ'ଣ ବା ମୁଁ ଦେବି ? ଯାହା ଭଲ ମନେ କରି ଦେବି, ତାହା ଯେବେ ତାଙ୍କ ରାଜଭଣ୍ଡାରରେ ଥାଏ, ତା' ହେଲେ ମୋର ଅନିଷ୍ଟ ହେବ । ରାଜା ଏହିପରି କେତେ କ'ଣ ଭାବି ଯାଉଥାନ୍ତି, କେତେକ ବିଷୟ ନେଇ ରାଜା ତାଙ୍କର ରାଜପଣ୍ଡିତମାନଙ୍କୁ ସମସ୍ତକଥା ପଚାରିଲେ । ସେମାନେ ଅବଶ୍ୟ ପଣ୍ଡିତଗିରି ଜାଣନ୍ତି ; କିନ୍ତୁ ଏ ସବୁ ବିଷୟରେ ଧାରଣା ନାହିଁ ! ତେଣୁ ସେମାନେ କିଛି ନ କହିପାରି ରକ୍ଷା ପାଇବାପାଇଁ ଇଆଡ଼ୁ ସିଆଡ଼ୁ କହି ରାଜାଙ୍କର ଅଧିକ ମନଦୁଃଖ କରାଇଲେ ।

ଦୈବଯୋଗକୁ ସେତିକିବେଳେ ଗୋପାଳ ଭଣ୍ଡ ଆସି ରାଜ ସଭାରେ ପହଞ୍ଚିଲା । ପ୍ରଜା, ପଣ୍ଡିତ ଓ ରାଜାଙ୍କର ମନଦୁଃଖ ଦେଖି ଗୋପାଳ ପଚାରିଲା—ମହାରାଜ ! ଯେଉଁ ମୁଖ ମଣ୍ଡଳକୁ ଚନ୍ଦ୍ରମା ସରି ହେବ ନାହିଁ, ତାକୁ ଆଜ ଅକାଳ ରାହୁ ଗ୍ରାସିଲା ପରି ଜଣାଯାଉଛି କାହିଁକି ? ସଭାରେ ସମସ୍ତ ସଭ୍ୟମାନେ ନୀରବରେ

ବସିଛନ୍ତି କାହିଁକି ? ଏପରି ହଠାତ୍ କ'ଣ ଗୋଟିଏ ବିପଦ ଆସି ପଡ଼ିଗଲା ଯେ, ସମସ୍ତଙ୍କର ମୁଖଶିରୀକୁ କାଢ଼ି ନେଇଛି ?

ଗୋପାଳର ଏପରି ଆଗ୍ରହ ଦେଖି ରାଜା ଅତ୍ୟନ୍ତ ଅଧୈର୍ଯ୍ୟ ହୋଇ ଚିଠି ଖଣ୍ଡିକ ଖୋଲି ପଢ଼ିଦେଲେ । ତା' ପରେ କହିଲେ, ମୋତେ ଯେ ଏ ବିପଦରୁ ଉଦ୍ଧାର କରିଦେବ, ମୁଁ ତାକୁ ପାଞ୍ଚହଜାର ଟଙ୍କା ପୁରସ୍କାର ଦେବି । ଗୋପାଳ ହସି ହସି କହିଲା—ଏହି ସାମାନ୍ୟ କଥାପାଇଁ ଏତେ ଚିନ୍ତା କରୁଛନ୍ତି ? ନବାବ ମୁସଲମାନ, ଆମେ ହିନ୍ଦୁ । ଆମର କ'ଣ ବୁଦ୍ଧି ନାହିଁ ଯେ, ତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ଆମ ହିନ୍ଦୁ କୂଳରେ ଥିବା ଜନ୍ତୁର କିଛି ଦେଇଦେଲେ ହେବ ନାହିଁ ।

ଗୋପାଳର କଥା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ରାଜା ଆତୁର ହୋଇ ପଚାରିଲେ···କି ଜନ୍ତୁ ଦେବା କହିଲ ? ଗୋପାଳ କହିଲା···ମହାରାଜ ! ଲୋକେ ଯେପରି କହନ୍ତି ସନ୍ଥକୁ ସନ୍ଥ ଉପାୟ ଏବଂ ଦୁଷ୍ଟକୁ ଠେଙ୍ଗା । ସେହିପରି ନବାବ ଯାହା ଖୋଜିଲା, ଆମେ ତାହାହିଁ ଦେବା । ସେ ଯଦି କୌଣସି ଜନ୍ତୁର ନାମ ଲେଖିଥାନ୍ତେ ଆମେ ସେଥିା ନେଇ ଦେଇ ଆସନ୍ତେ ; କିନ୍ତୁ ଯେତେବେଳେ କିଛି ଲେଖିନାହାନ୍ତି, ମୋ ମତରେ ପାଉଁଶ ନେଇ ଦେବା ଉଚିତ୍ ।

ଏତେ ବିପଦରେ ପଡ଼ି ମଧ୍ଯ ଗୋପାଳର କଥା ଶୁଣି ରାଜା ହସିଉଠିଲେ । ରାଜା ଖୁବ୍ ଧୀର ସ୍ୱରରେ ପଚାରିଲେ···ତୁମେ ଯେଉଁ ବୁଦ୍ଧି କହୁଛ, ଏଥିରେ ଆମ୍ଭେ ଥାଉଁ ଥାଉଁ ମରିବା ସିନା !

ଗୋପାଳ କହିଲା—ଜାହାଁପନା ! ଗୋପାଳ ତ କେବେ ହେଲେ ଅପଥ୍ୟ କଥା କହେନା । ଗୋପାଳ ଯାହା ଲୁଣ ଖାଏ, ତାହାର ଗୁଣ ଗାଏ । ଆପଣ ଜାଣନ୍ତି ଯେ, ଗୋଟିଏ ଛଟିଆ ଗୋଡ଼କୁ ଖଟ୍ୱାଙ୍ଗ ପୁରାଣ କରି ପଣ୍ଡିତମାନଙ୍କୁ ମୁକ୍ତ କରି ଆଣିଲି, ଗୋଟିଏ ଦିଗ୍‌ବିଜୟୀ ପଣ୍ଡିତକୁ ସୀମା ପାରି କରିଦେଲି, ଆଜ ମଧ ନବାବଙ୍କ ମହାଭାରତ ଲେଖିଲି ଏବଂ ନିଜର ବୁଦ୍ଧି ବଳରେ ଜହ୍ନର ଖଣ୍ଡିଟିକୁ ମୁକୁଳାଇ ଆଣିଲି । ତା ଠାରୁ ବଳି ଏଇଟା ବଡ଼ କଥା ଯେ, ସେଥିପାଇଁ ଗୋପାଳ ଡରିଯାଇ ଅପଥ୍ୟ କଥା କହିବ ।

ଗୋପାଳ କଥାରେ ଏତେବେଳକେ ରାଜା ବୁଝିଲେ ଏବଂ କହିଲେ, ଗୋପାଳ ତୁମେ ମୋତେ ଅନେକ ବିପଦରୁ ରକ୍ଷା କରିଛ ସତ ; କିନ୍ତୁ ଏହି ବିପଦରୁ କିପରି ରକ୍ଷା ପାଇବି, ତାହା ତୁମ ହାତର କଥା । ଗୋପାଳ କହିଲେ—ସେଥିଲାଗି ଭାବନା କରନ୍ତୁ ନାହିଁ ମୋ କଥା ଅନୁଯାୟୀ ଗୋଟିଏ ଫରୁଆ ବନ୍ଦୋବସ୍ତ କରନ୍ତୁ । ମୁଁ ଯାଇ ଗାଧୋଇ ଖାଇଆସେ, ନବାବଙ୍କ ଦରବାରକୁ ଯିବି ।

ଗୋପାଳ ଏହା କହି ଚାଲିଗଲା । ରାଜା ତା'ର କଥା ଅନୁସାରେ ଗୋଟିଏ ରୁପାର ଫରୁଆ ଆଣି ତା' ଉପରେ ମଖମଲ୍ ରୁମାଲ୍ ପକାଇ ଦେଲେ । ସେତିକିବେଳେ ଗୋପାଳ ଗାଧୋଇ ଖାଇ ହାତରେ ପାଉଁଶ ଧରି ଉକ୍ତ ଫରୁଆରେ ପୂରାଇ ନବାବଙ୍କ ଆଡ଼େ ଚାଲିଲା ଏବଂ କହିଲା—ମହାରାଜ ! ଆପଣ ଏ ବିଷୟ ନେଇ ବିଲ୍‌କୁଲ୍ ଚିନ୍ତା କରିବେ ନାହିଁ । ଆପଣ ଜାଣନ୍ତୁ ଯେ, ଗୋପାଳ ଜିଣିଛି ।

ସଞ୍ଜ ହୋଇ ଆସୁଥାଏ । ଗୋପାଳ ଯାଇ ନବାବଙ୍କ ଦରବାରରେ ପହଞ୍ଚି ନବାବଙ୍କୁ ସଲାମ କଲା । ନବାବ କୌତୂହଳୀ ହୋଇ ଆସିବାର କାରଣ ପଚାରନ୍ତେ, ଗୋପାଳ ସମସ୍ତ କଥା କହିଗଲା । କୌତୂହଳୀ ନବାବ ଉକ୍ତ ଜିନିଷକୁ ଦେଖିବା ପାଇଁ କହିବାରୁ, ଗୋପାଳ କହିଲା—ନା ଆଜ୍ଞା ! ସେ ବର୍ତ୍ତମାନ ଦେଖାଯିବନି । ବର୍ତ୍ତମାନ ଦେଖାଇଲେ ତା'ର ଗୁଣ ଅଲଗା ପ୍ରକାର ହୋଇ ଯାଇପାରେ ; ତେଣୁ ରାତି କାଳରେ ନିର୍ଜ୍ଜନ ସ୍ଥାନରେ ମୁଁ ଦେଖାଇବି । ଆପଣଙ୍କ ବିନା ଯେପରି ଆଉ କାହାରି ଦୃଷ୍ଟି ନ ପଡ଼େ ।

ସଞ୍ଜ ଭଙ୍ଗ ହୋଇ ରାତି ହେଲା । ନବାବ ଗୋପାଳକୁ ଗୋଟିଏ ନିର୍ଜ୍ଜନ କକ୍ଷକୁ ନେଇ କହିଲେ—କ'ଣ ଆଣିଛ ଏଥର ଦିଅ । ଗୋପାଳ ଫରୁଆଟି ବାହାର କରି କହିଲା, ଖୋଦାବନ୍ଦ ! ଆପଣ ବିହାର, ବଙ୍ଗ ଓ ଓଡ଼ିଶାର ଅଧିପତି । ଆପଣଙ୍କ ଭଣ୍ଡାରରେ ଏପରି କି ଜିନିଷ ନାହିଁ ଯେ; ତାହା ରାଜା କୃଷ୍ଣଚନ୍ଦ୍ରଙ୍କ ଭଣ୍ଡାରରେ ଥିବ । ତାହା କହିବା ଗୋଟିଏ ବାହୁଲ୍ୟ । ତଥାପି ଆପଣଙ୍କ ହୁକୁମକୁ ବଜାୟ କରିବା ପାଇଁ ମହାରାଜା ଏ ଫରୁଆଟି ମୋ ହାତରେ ପଠାଇଛନ୍ତି ।

ଏକଥା ଶୁଣି ନବାବ ଅଧୈର୍ଯ୍ୟ ହୋଇ କହିଲେ—କାହିଁ ଦିଅ ତ ଦେଖିବା କି ଅଦ୍ଭୁତ ଜିନିଷ । ଗୋପାଳ ଫରୁଆଟି ଖୋଲିଦେଇ କହିଲା— ଖୋଦାବନ୍ଦ ! ଫରୁଆ ଭିତରେ ଏ ଯେଉଁ ବିଭୂତିକୁ ଦେଖୁଛନ୍ତି, ଏହି ବିଭୂତିର କେତେ ଗୁଣ ବା କେତେ ଶକ୍ତି ତାହା ବର୍ଣ୍ଣନା କରି ହେବ ନାହିଁ । ଆପଣ ଟୋପାଏ ଏଥିରୁ ମୁଣ୍ଡରେ ମାରିଲେ ଦିବ୍ୟଚକ୍ଷୁ ପାଇ ସ୍ୱର୍ଗ କେଉଁଠି, ସେଠାରେ କ'ଣ ଅଛି, ସବୁ ଦେଖି ପାରିବେ । ମାତ୍ର ଗୋଟିଏ କଥା ।

ନବାବ ଉତ୍ସାହିତ ହୋଇ କହିଲେ—ଆଉ ଗୋଟିଏ କଥା କ'ଣ କହିଲ ? ଗୋପାଳ କହିଲା—ଜୋହାବନ୍ଦ ! ଯାହାର ଜନ୍ମ ଦୋଷ ଥିବ, ଅର୍ଥାତ୍ ମା' ଉପପତି ଦ୍ୱାରା ଜନ୍ମ ଦେଇଥିବ—ସେ ବନ୍ଦିତ ମୁଣ୍ଡରେ ମାରିଲେ ସୁଦ୍ଧା ତାକୁ କିଛି ଦେଖା ଯିବନି । ଆପଣ ଦେଖୁନାହାନ୍ତି, ତାହାର ପରୀକ୍ଷା ଏହି ହାତେ ହାତେ ଅଛି ।

ଗୋପାଳ ଏ କଥା କହି ଫରୁଆ ଭିତରୁ ପାଉଁଶ ଟିକିଏ ଆଣି ନିଜ ମୁଣ୍ଡରେ ମାରି ଆଉ ଟିପାଟିଏ ମୁର୍ଶିଦାବାଦ ନବାବଙ୍କ ମୁଣ୍ଡରେ ଲଗାଇଲା । ତା ପରେ ତାଙ୍କୁ ବାହାରକୁ ଆଣି ଆକାଶକୁ ଚାହିଁ ଆନନ୍ଦରେ ହୋଇ କହି ଉଠିଲା—ବାଃ ବାଃ କି ଚମତ୍କାର ! ! ଏହି ଦେଖନ୍ତୁ ନବାବ ସାହେବ ! ଇନ୍ଦ୍ର କିପରି ସିଂହାସନରେ ବସିଛନ୍ତି । ତାଙ୍କ ପାଖରେ ଦେବ ସେନାପତି—କାର୍ତ୍ତିକେୟ କିପରି ଭାବରେ ଅସ୍ତ୍ର ଧରି ଛିଡ଼ା ହୋଇଛନ୍ତି । ଆହୁରି ଦେଖନ୍ତୁ ଅପ୍ସରାମାନେ ବିଚିତ୍ର ଶାଢ଼ୀ ପିନ୍ଧି କେଶକୁ ମୁକୁଳା କରି ଦେଇଛନ୍ତି ଏହି ଦେଖନ୍ତୁ ଦେବ ସଭାରେ ନୃତ୍ୟଗୀତ । ଆହା କି ସୁନ୍ଦର ଦୃଶ୍ୟ । ଏହି ଦେଖନ୍ତୁ, ବୈକୁଣ୍ଠ ପୁରରେ ଲକ୍ଷ୍ମୀ ନାରାୟଣ କିପରି ଭାବେ ବସିଛନ୍ତି । ଆପଣ ଏହି ଦେଖନ୍ତୁ ପୀର ଠାକୁର । ଆପଣ ସବୁ ଦେଖି ପାରୁଛନ୍ତି ତ ?

ନବାବ ଆଶ୍ଚର୍ଯ୍ୟ ହୋଇ ଥରେ ଗୋପାଳ ମୁହଁକୁ ଆଉ ଥରେ ଆକାଶକୁ ଚାହିଁ ଦେଖନ୍ତି ତ ଗୋପାଳ କହିବା କଥା ମିଛ । ତଥାପି ସେ ହଁ ନ କହିଲେ ନିଜର ମର୍ଯ୍ୟାଦା ନଷ୍ଟ ହେବ । ମା ଅପଭ୍ରଷ୍ଟା ହେବ, ବିଟପୀ ସନ୍ତାନ ବୋଲି ସମସ୍ତେ ଉପହାସ କରିବେ । ନବାବ ନିଜର ସମ୍ମାନ ରକ୍ଷା କରିବା ଲାଗି ମିଥ୍ୟାର ଆଶ୍ରୟ ନେଇ

ଗୋପାଳ ସହିତ ତାଳ ଦେଇ କହିଲେ—ବାଃ, ବଡ଼ ଚମତ୍କାର ଅଦ୍ଭୁତ ଏ ।

ଏହା କହି ଗୋପାଳକୁ ବଡ଼ ଯତ୍ନରେ ରଖାଇଲେ । ତା' ପରଦିନ ପାଞ୍ଚ ହଜାର ଟଙ୍କା ଦେଇ ବିଦାୟ ଦେଲେ । ଗୋପାଳ ସିଧା ରାଜା କୃଷ୍ଣଚନ୍ଦ୍ରଙ୍କ ନିକଟରେ ପହଞ୍ଚି ସମସ୍ତ କଥା କହିଲା । ରାଜା ଖୁସି ହୋଇ ଆଉ ପାଞ୍ଚ ହଜାର ଟଙ୍କା ସହିତ ପାଟ ଲୁଗା ଦେଇ ବିଦାୟ ଦେଲେ ।

———

## ବିଜ୍ଞାପନ

ଶ୍ରୀମଦ୍ ଭାଗବତ ସୃଷ୍ଟି କର୍ତ୍ତାଙ୍କ ମୁଖ ନିସୃତ ବାଣୀହେତୁ ଏହା ଅଷ୍ଟାଦଶ ପୁରାଣ ମଧ୍ୟରେ ଶ୍ରେଷ୍ଠ ଗ୍ରନ୍ଥ ରୂପେ ପରିଗଣିତ । ଏଣୁ ଏହିଗ୍ରନ୍ଥ ଘରେ, ଘରେ ଏବଂ ଦେବାଦେବୀ ମନ୍ଦିର ମାନଙ୍କରେ ପୂଜା ପାଉଛି ତଥା ପାଠ ମଧ୍ୟ ହେଉଛି । କିନ୍ତୁ ଏହି ଭାଗବତ ବୃହତ ଗ୍ରନ୍ଥ ହେତୁ ତହିଁରୁ ସାର ବା ତା'ର ମାହାତ୍ମ୍ୟ ସଂଗ୍ରହ କରିବା ବହୁତ କଷ୍ଟ ସାଧ୍ୟ । ଏଣୁ ଲୋକଲୋଚନକୁ ଆଣିବା ନିମିତ୍ତ ମହର୍ଷି ବ୍ୟାସଦେବଙ୍କ ପ୍ରଣୀତ ସଂସ୍କୃତ ଶ୍ଲୋକର ଅନୁବାଦ ସହ 'ଭାଗବତ ମାହାତ୍ମ୍ୟ' ପୁସ୍ତକ ଖଣ୍ଡ ପାଠକଲେ ଉକ୍ତ ତେରଖଣ୍ଡ ଭାଗବତ ବହିର ମାହାତ୍ମ୍ୟ ଅତିସହଜେ ଲାଭ କରିପାରିବେ । ଏହା ବ୍ୟତିତ ଉକ୍ତ ଭାଗବତ ମାହାତ୍ମ୍ୟ ବହିଟି ପାଠକଲେ ସେଥିରୁ ପାଇବେ ଚତୁଃଶ୍ଳୋକୀ ଭାଗବତ, ଭଗବାନଙ୍କ ମୁଖରୁ ବ୍ରହ୍ମାଙ୍କ ପ୍ରତି କଥିତ ଶ୍ରୀମଦ୍ ଭାଗବତ ମାହାତ୍ମ୍ୟ, ଦେବର୍ଷି ନାରଦଙ୍କ ଭକ୍ତିସହ ଭେଟ, ଉକ୍ତର କଷ୍ଟ ନିବୃତ୍ତିପାଇଁ ନାରଦଙ୍କ ଉଦ୍ୟୋଗ, ଗୋକର୍ଣ୍ଣ ଉପାଖ୍ୟାନ, ଧୁନ୍ଧୁକାରୀ ପ୍ରେତ ଶରୀର ପ୍ରାପ୍ତ ଓ ତହିଁରୁ ଉଦ୍ଧାର ତଥା ଶ୍ରୀମଦ୍ ଭାଗବତ ସପ୍ତାହ ଯଜ୍ଞର ବିଧି ।

ଏତଦ୍‌ବ୍ୟତୀତ ବେଦ, ବେଦାନ୍ତ, ଉପନିଷଦ, ଓଷା, ବ୍ରତ, ସମସ୍ତ ପ୍ରକାର ପୁରାଣ, ଗଳ୍ପ, ନାଟକ, ପଞ୍ଜିକା, କ୍ୟାଲେଣ୍ଡର ସହ କୋମଳମତି ଶିଶୁମାନଙ୍କ ବିଦ୍ୟାରମ୍ଭ ପାଇଁ ବିଭିନ୍ନ ପ୍ରକାରର ଅକ୍ଷର ଶିକ୍ଷାବହି ନିମ୍ନ ଠିକଣାରେ ପତ୍ରାଳାପ କଲେ ସୁବିଧା ଦରରେ ପାଇପାରିବେ । ପ୍ରକାଶ ପାଇଲା ବୃହତ ଜ୍ୟୋତିଷ ଶାସ୍ତ୍ର ପାରାଶର ହୋରା ମୂଲ୍ୟ-୨୫୦ ଟଙ୍କା

ଠିକଣା

ମେସର୍ସ - **ଧର୍ମଗ୍ରନ୍ଥ ଷ୍ଟୋର**

ପରିଚାଳକ - **ଶ୍ରୀ ବିଦ୍ୟାଧର ସାହୁ**

ଅଲିଶାବଜାର, କଟକ ୨

ଫୋନ୍ ନଂ - ୨୪୭୯୬

ବି.ବି.ପି- ବାଲମୁକୁନ୍ଦ ବି.ବି.ପି ସେଣ୍ଟର, କାଜିବଜାର, କଟକ-୯